ଛାତ୍ରସାଥୀ ର ବିଶ୍ୱ ବିଚିତ୍ରାଙ୍କ



# ବୈଜ୍ଞାନିକ

# ଗୋଟଲେବ୍ ଡେମ୍ଲର

# ଛାତ୍ରସାଥୀ : ବିଶ୍ୱବିଚିତ୍ରା (୩-୪)

ଓ

# ବୈଜ୍ଞାନିକ ଗୋଟଲେବ ଡେମଲର

୨୧ଶ ବର୍ଷ    ୧୧ଶ ସଂଖ୍ୟା

୧୯୮୩

•

ସଂପାଦକ :

ଶ୍ରୀ ଯୋଗେନ୍ଦ୍ର କୁମାର ମହାନ୍ତି

•

ପରିକଳ୍ପନା ସଂପାଦକ :

ଶ୍ରୀ ନବକିଶୋର ମହାପାତ୍ର

•

ପ୍ରକାଶକ ଓ ମୁଦ୍ରକ :

କେ. ମହାପାତ୍ର ଏଣ୍ଡ କୋ.ଙ୍କ

ତରଫରୁ

ଶ୍ରୀ ବୃନ୍ଦାବନ ଦାସଙ୍କ ଦ୍ୱାରା

ଗ୍ରାମପଞ୍ଚାୟତ ପ୍ରେସ

କଟକ-୨ ରେ ମୁଦ୍ରିତ

•

ମୂଲ୍ୟ    ଟ ୬-୦୦

## ସୂଚୀପତ୍ର



## ଭ୍ରମ ସଂଶୋଧନ

ବୈଜ୍ଞାନିକଙ୍କର ପ୍ରକୃତ ନାମ ହେଉଛି ଗୋଟଲେବ ଡେମଲର । ଭ୍ରମବଶତଃ ଭିତର ପୃଷ୍ଠାମାନଙ୍କରେ ମୋଟଲେବ ଡେମଲର ଛପା ହୋଇ-ପାଇଛି ।

ଆଜି ଆପଣଙ୍କ ଘରେ ଆନନ୍ଦ ନାହିଁ କାହିଁକି ?



ଆପଣଙ୍କ ଘରକୁ ବୋଧହୁଏ

[illegible]

(ମାସିକ ଶିଶୁ ପତ୍ରିକା)

ଆସୁ ନାହିଁ ।।

•

ନିଜ ପିଲାଙ୍କ ମନୋରଞ୍ଜନ ତଥା ଜ୍ଞାନ ବୃଦ୍ଧି ପାଇଁ ପ୍ରତିମାସରେ



[illegible]

(ମାସିକ ଶିଶୁ ପତ୍ରିକା)

କିଣନ୍ତୁ ।

ପ୍ରତି ଖଣ୍ଡର ମୂଲ୍ୟ ଟ୨-00

ପ୍ରାପ୍ତିସ୍ଥାନ

ଜେ. ମହାପାତ୍ର ଝଣ୍ଡୁ ଜୋ:

କଟକ - ୨

# ବୈଜ୍ଞାନିକ ମୋଟଲେବ ଡେମଲାର

ପ୍ରାଚୀନ କାଳରେ ମଣିଷ ଚାଲିଚାଲି ବହୁଦୂର ଯାତ୍ରା କରୁଥିଲା । ଏଥି ନିମନ୍ତେ ତାକୁ ବହୁ ପରିଶ୍ରମ କରିବାକୁ ପଡ଼ୁଥିଲା ଓ ବହୁ ସମୟ ମଧ୍ୟ ନଷ୍ଟ ହେଉଥିଲା । ଏଣୁ ସବୁ ଦେଶର ଲୋକେ ପରସ୍ପର ସହିତ ସମ୍ପର୍କ ରଖିପାରୁ ନଥିଲେ । ଏହାର କାରଣ ସେତେବେଳେ କୌଣସି ଦ୍ରୁତଗାମୀ ଯାନର ଆବିଷ୍କାର ହୋଇ ନଥିଲା କିମ୍ବା ଏ ପ୍ରକାର ଯାନ ଚଳାଚଳ ନିମନ୍ତେ ଉପଯୁକ୍ତ ରାସ୍ତା ନଥିଲା । ସେତେବେଳର ପ୍ରଧାନ ଯାନ ଥିଲା— ରଥ ଓ ଶିବିକା ।

ମଧ୍ୟ ଯୁଗରେ ବାଷ୍ପୀୟ ଯାନ ଆବିଷ୍କୃତ ହେଲା । ଏହି ବାଷ୍ପୀୟ ଯାନ ଭିତରେ ମଟର ଗାଡ଼ି ଅନ୍ୟତମ । ମଟର ଗାଡ଼ିର ଜନ୍ମ ଜର୍ମାନୀରେ । ବୈଜ୍ଞାନିକ ଡେମଲାର ପ୍ରଥମେ ମଟର ଗାଡ଼ି ଆବିଷ୍କାର କଲେ । ତାଙ୍କର ଏହି ଆବିଷ୍କାର ଫଳରେ ରାସ୍ତା ଉପରେ ମଟର ଗାଡ଼ି, ମଟର ସାଇକେଲ ଓ ପାଣିରେ ମଟର ଲଞ୍ଚ ପେଟ୍ରୋଲ ଦ୍ୱାରା ଚାଲିବା ସମ୍ଭବ ହେଲା । କିନ୍ତୁ ଏ ଆବିଷ୍କାର ଏତେ ସହଜ ନୁହେଁ । ଏଥି ନିମନ୍ତେ ତାଙ୍କୁ ବହୁ ବର୍ଷ ଧରି କଠିନ ପରିଶ୍ରମ କରିବାକୁ ପଡ଼ିଥିଲା । ବାରମ୍ବାର ଅସଫଳତା ପରେ ଆସିଲା ଅପୂର୍ବ ସଫଳତା ।

ଜର୍ମାନୀ ଏକ ବୈଜ୍ଞାନିକପ୍ରସୂ ଦେଶ । ଓ୍ୱାଟେମବର୍ଗ ପ୍ରଦେଶ ଜର୍ମାନୀ ମଧ୍ୟରେ ଅବସ୍ଥିତ । ସ୍କର୍ନ ଡର୍ଫ, ଓ୍ୱାଟେମବର୍ଗ ପ୍ରଦେଶର ଏକ ଛୋଟ ସହର । କିନ୍ତୁ ଏ ସହରଟି ଗୋଟିଏ ଜମିଦାରୀ ଓ ଜଣେ ଜମିଦାର ଥିଲେ ଏହାର ଶାସକ । ୧୮୩୪ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୧୭ ତାରିଖ ବିଶ୍ୱ ଇତିହାସରେ ଏକ ସ୍ମରଣୀୟ ଦିନ । ସେହିଦିନ ଡେମଲାର ସ୍କର୍ନ ଡରଫ ସହରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ବାପା ଥିଲେ ଖ୍ରୀଷ୍ଟୀୟାନ୍ । ରୁଟି ସେକି ସେ ଜୀବିକା ଅର୍ଜନ କରୁଥିଲେ । ଜଣେ ଭଲ ରୁଟି ସେକାଳି ରୂପେ ତାଙ୍କର ଖ୍ୟାତିଥିଲା । ତାଙ୍କର ଚାରିଟି ପୁତ୍ର ମଧ୍ୟରୁ ଡେମଲାର ଦ୍ୱିତୀୟ ସନ୍ତାନ । ଡେମଲାରଙ୍କର ମାମୁ ଅଜା ମଧ୍ୟ ଜଣେ ଦକ୍ଷ ଓ ସ୍ୱନାମଧନ୍ୟ କମାର । ଡେମଲାରଙ୍କର ପରିବାରରେ ଚିର ସୁଖ ଶାନ୍ତି ବିରାଜମାନ କରୁଥିଲା । ଗହଳ ଓକ୍ ଉଦ୍ୟାନ ଭିତରେ ଘରଟି ଗୋଟିଏ ଉଦ୍ୟାନ ଘଟିକା ଭଳି ଦେଖାଯାଉଥାଏ ।

ଡେମଲାର ବଡ ମେଧାବୀ ଥିଲେ । ଖୁବ କମ ବୟସରେ ସେ ପାଠପଢ଼ା ଆରମ୍ଭ କଲେ । ଯଥା ସମୟରେ ତାଙ୍କର ପ୍ରାଥମିକ ଶିକ୍ଷା ଶେଷ ହେଲା । ଏହା ପରେ ସେ 'ଅଲସ୍କଲ' ନାମକ ସ୍କୁଲରେ ନାମ ଲେଖାଇଲେ । ଅଲସ୍କଲ ଗୋଟିଏ ବ୍ୟାକରଣ

ସ୍କୁଲ । ଏ ସ୍କୁଲର ଶିକ୍ଷକମାନେ ଛାତ୍ର ଛାତ୍ରୀମାନଙ୍କର ପାଠପଢ଼ା ଉପରେ ବିଶେଷ ଦୃଷ୍ଟି ଦେଉଥିଲେ । ଡେମଲରଙ୍କର ବ୍ୟାକରଣ ପ୍ରତି ବିଶେଷ ଆଗ୍ରହ ନଥିଲେ ମଧ୍ୟ ସେ ଥିଲେ କଠୋର ପରିଶ୍ରମୀ । ପ୍ରତ୍ୟେକ ବିଷୟକୁ ଭଲରୂପେ ନ ଜାଣିବା ପର୍ଯ୍ୟନ୍ତ ସେ ସ୍ଥିର ହୋଇ ରହି ପାରୁ ନ ଥିଲେ । ଜଣେ ପ୍ରଥମ ଶ୍ରେଣୀର ଛାତ୍ରରୂପେ ସେ ସୁନାମ ଅର୍ଜନ କଲେ । ଶିକ୍ଷକମାନେ ମଧ୍ୟ ତାଙ୍କୁ ଯଥେଷ୍ଟ ଶ୍ରଦ୍ଧା କରୁଥିଲେ । ଏ ବିଦ୍ୟାଳୟର ନିୟମ ଓ ଶୃଙ୍ଖଳା ଫଳରେ ସେ ଅଧ୍ୟବସାୟୀ ହୋଇଉଠିଲେ । କିନ୍ତୁ ବ୍ୟାକରଣ ପ୍ରତି ତାଙ୍କର ଆଗ୍ରହ ନ ଥିବାରୁ ସେ ଅନ୍ୟ ପିଲାଙ୍କ ଭଳି ପାଠରେ ଅଧିକ ନମ୍ବର ରଖିପାରିଲେ ନାହିଁ ।

ଖେଳକୁଦ ପ୍ରତି ଡେମଲରଙ୍କର ଆଦୌ ଆଗ୍ରହ ନ ଥିଲା । ଅନ୍ୟ ପିଲାମାନେ ଖେଳିବା ବେଳେ ସେ ଖଣ୍ଡିଏ ବହି ଧରି ପଢ଼ିବା ପାଇଁ ବସୁଥିଲେ । ବିଭିନ୍ନ ବିଷୟରେ ଖୁବ କମ ସମୟ ଭିତରେ ଜ୍ଞାନ ଅର୍ଜନ ପାଇଁ ଡେମଲର ବଡ଼ ବ୍ୟାକୁଳ ହୋଇ ଉଠୁଥିଲେ । ଏଥିନିମନ୍ତେ ସେ ଅଦମ୍ୟ ଚେଷ୍ଟା ମଧ୍ୟ କରୁଥିଲେ ।

ପିଲାଟି ଦିନରୁ ଡେମଲରଙ୍କର ବିଜ୍ଞାନ ପ୍ରତି ଆକର୍ଷଣ ଥିଲା । ପାଠ ନ ପଢ଼ିବା ସମୟରେ ସେ ବିଭିନ୍ନ ଯନ୍ତ୍ରପାତି ଧରି ବସୁଥିଲେ । ସେଗୁଡ଼ିକର ବ୍ୟବହାର ସମ୍ବନ୍ଧରେ ଜାଣିବାକୁ ଚେଷ୍ଟା କରୁଥିଲେ । ଡେମଲର ଖେଳ କୌତୁକକୁ ଆଦୌ ଭଲ ପାଉ-ନ ଥିଲେ । ପିଲାମାନଙ୍କର ସ୍ୱଭାବତଃ କେତେକ ଜିନିଷ ପ୍ରତି ଆଗ୍ରହ ଜନ୍ମେ । କିନ୍ତୁ ଡେମଲରଙ୍କର ସେ ପ୍ରକାର କୌଣସି ଜିନିଷ ପ୍ରତି ଆଗ୍ରହ ନଥିଲା । ସେ ପ୍ରାୟ ନିଃସଙ୍ଗ ରହିବାକୁ ଭଲ ପାଉଥିଲେ । ଏଣୁ ତାଙ୍କର ବିଶେଷ ସାଙ୍ଗ ସାଥୀ ନ ଥିଲେ । ଡେମଲର ଥିଲେ ସ୍ୱାଧୀନଚେତା । ଅନ୍ୟମାନେ ତାଙ୍କ ବିଷୟରେ କଅଣ ଭାବୁଛନ୍ତି, ସେଥିପ୍ରତି ତାଙ୍କର ଭ୍ରୂକ୍ଷେପ ନ ଥିଲା । ସେ ଯେତେବେଳେ ଟିକିଏ ସମୟ ପାଉଥିଲେ ବସି ଚିନ୍ତା କରୁଥିଲେ । ଏଣୁ ସମବୟସ୍କ ପିଲାଙ୍କ ସହିତ ମିଳାମିଶା ନ କରି ସେ ପ୍ରାୟ ବୟସ୍କ ପିଲାଙ୍କ ସହିତ ମିଳାମିଶା କରୁଥିଲେ । ତାଙ୍କର ଜଣେ ଦାଦା ଥିଲେ । ବୟସରେ ସେ ଡେମଲରଙ୍କ ଠାରୁ ସତର ବର୍ଷ ବଡ଼ । କିନ୍ତୁ ଆଶ୍ଚର୍ଯ୍ୟର କଥା, ଡେମଲରଙ୍କର ତାଙ୍କ ସହିତ ଘନିଷ୍ଠ ବନ୍ଧୁତ୍ୱ ଥିଲା । ତାଙ୍କର ଦାଦା ମ୍ୟୁନିସିପାଲିଟିର ଜଣେ କର୍ମଚାରୀ ଥିଲେ । ତାଙ୍କର ପ୍ରଧାନ କାମ ଥିଲା ଗୃହ ନିର୍ମାଣ ଯୋଜନା ଆଦି ପ୍ରସ୍ତୁତ କରିବା । ଡେମଲରଙ୍କର ବାପା ଡେମଲରଙ୍କର ଭବିଷ୍ୟତ ସମ୍ବନ୍ଧରେ ଅନ୍ୟ ପ୍ରକାର ଚିନ୍ତା କରୁଥିଲେ । ସେ ଭାବୁଥିଲେ ଡେମଲର ବଡ଼ ହେଲେ ଉଚ୍ଚ ଶିକ୍ଷା ଶେଷ କରିବେ । ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ହୋଇ ବହୁଧନ ଉପାର୍ଜନ କରିବେ । ଏଣୁ ଡେମଲରଙ୍କର ଦାଦା ସରକାରୀ କର୍ମଚାରୀ ଥିବାରୁ ବାପା ତାଙ୍କ ସହିତ ମିଳାମିଶା କରିବା ପାଇଁ ପୁଅକୁ ଉତ୍ସାହିତ କରୁଥିଲେ ।

ଦାଦି ଓ ପୁତୁରଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ଥିଲେ ମଧ୍ୟ ସମୟ ସମୟରେ ଭୀଷଣ କଳହ ହେଉଥିଲା । କିନ୍ତୁ କିଛି ସମୟ ପରେ ସେମାନେ ପୁଣି ମିଳିମିଶି ଯାଉଥିଲେ ଓ ପୂର୍ବ ସୁସମ୍ପର୍କ ପୁଣି ଫେରି ଆସୁଥିଲା । ଦୁହେଁ ଏକ ମା'ର ଦୁଇ ପୁଅ ଭଳି ଚଳୁଥିଲେ । ଦାଦାଙ୍କର ପୁଅଙ୍କର ନାମ ମଧ୍ୟ ମୋଟଲେବ । ଡେମଲାରଙ୍କର ଦାଦାପୁଅ ଭାଇ ବହୁ ଉପାଦେୟ ପୁସ୍ତକ ସଂଗ୍ରହ କରିଥିଲେ । ବହିଗୁଡ଼ିକ ବିଖ୍ୟାତ ଲେଖକମାନଙ୍କର ରଚନା । ଡେମଲାର, ମୋଟଲେବଙ୍କର ଲାଇବ୍ରେରୀକୁ ଆସି ବହି ଧରି ବସିପଡ଼ନ୍ତି । ସେ ଏପରି ଏକାଗ୍ରତା ସହିତ ପଢ଼ନ୍ତି ଯେ ଭୋକ ଶୋଷ ମଧ୍ୟ ଭୁଲିଯାଆନ୍ତି । ଘଣ୍ଟା ଘଣ୍ଟା ଧରି ପଢ଼ିଲେ ମଧ୍ୟ ତାଙ୍କର ଏକାଗ୍ରତା ନଷ୍ଟ ହୁଏ ନାହିଁ । ପୁଅ ଫେରିବାରେ ବିଳମ୍ବ ହେଲେ ବାପା ଡକାଇ ପଠାନ୍ତି । ତା ପରେ ଡେମଲାର ଅନିଚ୍ଛାସତ୍ତ୍ୱେ ଘରକୁ ଯାଆନ୍ତି ।

ଡେମଲାର ଥରେ 'ଡନକଲେ'ାସ' ନାମକ ଖଣ୍ଡିଏ ବହି ପଢ଼ୁଥିଲେ । ଏହି ବହି ପ୍ରତି ସେ ଖୁବ ଆକୃଷ୍ଟ ହୋଇ ପଡ଼ିଲେ । ସମର କାହାଣୀ ତାଙ୍କୁ ଖୁବ ଭଲ ଲାଗେ । ଜର୍ମାନୀର ଯୁଦ୍ଧ ଇତିହାସ ପଢ଼ିବାକୁ ତାଙ୍କର ବିଶେଷ ଆଗ୍ରହ ଥିଲା । ତାଙ୍କର ବଡ଼ ଭାଇ ମୋଟଲେବ ଜଣେ ମେଧାବୀ ଛାତ୍ର । ଇତିହାସରେ ସେ ଗଭୀର ଜ୍ଞାନ ଅର୍ଜନ କରିଥିଲେ । ଜର୍ମାନ ଯୋଦ୍ଧାମାନଙ୍କର ବୀରତ୍ୱ କାହାଣୀ, ନେପୋଲିୟନଙ୍କର ଜର୍ମାନୀ ଆକ୍ରମଣ ବେଳେ ଜର୍ମାନୀ ସୈନ୍ୟମାନେ କିପରି ବୀରତ୍ୱର ସହିତ ଯୁଦ୍ଧ କରିଥିଲେ ଏ ସବୁ କଥା ସେ ଡେମଲାରଙ୍କ ଆଗରେ ବର୍ଣ୍ଣନା କରୁଥିଲେ ।

ଜନ୍ମଭୂମି ଡେମଲାର ସମ୍ବନ୍ଧରେ ମଧ୍ୟ ସେ ବିଭିନ୍ନ କାହାଣୀ କହୁଥିଲେ । ସେ କହୁଥିଲେ—"ସନ୍ଧି ପାଇଁ କଥାବାର୍ତ୍ତା ଚାଲିଥାଏ । ଫ୍ରାନ୍‌ସର ପ୍ରତିନିଧିମାନଙ୍କ ସହିତ ୱର୍ଣ୍ଣଟର୍ଫ କାଉନସିଲର ସଭ୍ୟମାନେ କଥାବାର୍ତ୍ତା ଚଳାଇଥାଆନ୍ତି । ସେତିକି-ବେଳେ ବର୍ଗମାଷ୍ଟରଙ୍କର ସ୍ତ୍ରୀ ହଠାତ୍ ଆଲୋଚନା ଗୃହ ଭିତରକୁ ପଶି ଆସିଲେ । ସେ ଚିତ୍କାର କରି କହିଲେ—"ସମସ୍ତ ପ୍ରକାର ଆଲୋଚନା ବନ୍ଦ କର ।" ଏହା ଫଳରେ ସନ୍ଧି ଚୁକ୍ତି ହୋଇପାରିଲା ନାହିଁ । ଫ୍ରାନ୍‌ସ ଓ ଜର୍ମାନୀ ଭିତରେ ପ୍ରବଳ ଯୁଦ୍ଧ ହେଲା । ଡେଇମଲରର ଅଧିବାସୀମାନେ ବୀରତ୍ୱର ସହିତ ଫ୍ରାନ୍‌ସ ସେନା ବିରୁଦ୍ଧରେ ଲଢ଼ିଲେ, ଫଳରେ ଆତ୍ମସମର୍ପଣ କରିବାକୁ ପଡ଼ିଲା ।

ଏ କାହାଣୀ ଡେମଲାରଙ୍କର ମନରେ ଗଭୀର ପ୍ରଭାବ ପକାଇଲା । ଦାଦି ପୁଅ ଭାଇଙ୍କର ଗଭୀର ଜ୍ଞାନ ଦେଖି ସେ ବିସ୍ମିତ ହେଲେ । ସେ କିପରି ଏତେ ଜ୍ଞାନ ଅର୍ଜନ କଲେ ତାହା ଜାଣିବା ପାଇଁ ଡେମଲାରଙ୍କ ମନରେ ଆଗ୍ରହ ହେଲା । ଦେଶରେ ଶାସନ କିପରି ଚଳୁଛି ସେ ସମ୍ବନ୍ଧରେ ମଧ୍ୟ ସେ ଜାଣିବା ପାଇଁ ସର୍ବଦା ଚେଷ୍ଟା କରୁଥିଲେ । ଥରେ ତାଙ୍କର ଦାଦା ପୁଅ ଭାଇ କହିଲେ—"ଡେମଲାର, ତୁମେ ସୈନ୍ୟ ବାହିନୀରେ ଯୋଗ ଦେଲେ ଜଣେ ଭଲ ସୈନିକ ହୁଅନ୍ତ ।" କିନ୍ତୁ ସୈନିକ ହେବା ପାଇଁ ଡେମଲାରଙ୍କର ଟିକେ ହେଲେ ଆଗ୍ରହ ନ ଥିଲା ।

ଚଉଦ ବର୍ଷ ବୟସରେ ଡେମଲରଙ୍କର ସ୍କୁଲ ଶିକ୍ଷା ଶେଷ ହେଲା । ଜର୍ମାନୀରେ ସେତେବେଳେ ଅସ୍ଥିରତା ଲାଗି ରହିଥାଏ । ଚାଲିଥାଏ ଭୀଷଣ ଆନ୍ଦୋଳନ । ପୂର୍ବରୁ ଡେମଲରଙ୍କୁ ସୈନ୍ୟ ବାହିନୀରେ ଭର୍ତ୍ତି କରାଇବା ପାଇଁ ତାଙ୍କ ବାପାଙ୍କର ଇଚ୍ଛା ଥିଲା । କିନ୍ତୁ ସୈନ୍ୟବାହିନୀ ପ୍ରତି ତାଙ୍କର ଆଗ୍ରହ କମିଗଲା । ସେନାରେ ଯୋଗଦେବା ପାଇଁ ସେ ଡେମଲରଙ୍କୁ ଉତ୍ସାହିତ କଲେ ନାହିଁ ।

୧୮୪୮ ମସିହା । ଡେମଲାର ପାଠପଢ଼ା ଛାଡ଼ିଦେଲେ । ସେତେବେଳେ ସମଗ୍ର ୟୁରୋପ ବିପ୍ଳବ ନିଆଁରେ ଧୁ ଧୁ ହୋଇ ଜଳୁଥାଏ । ଅଶାନ୍ତି ଓ ରକ୍ତପାତ ଭିତରେ ଲୋକେ ନାନା ପ୍ରକାର କଷ୍ଟ ଭୋଗ କରୁଥାଆନ୍ତି । ଫ୍ରାନ୍ସରେ ମଧ୍ୟ ଏ ବିପ୍ଳବ ଲାଗି ରହିଥାଏ । ଏହି ବିପ୍ଳବ ଫଳରେ ଫ୍ରାନ୍ସର ରାଜା ଲୁଇସ ଫିଲିପେ ରାଜଗାଦିରୁ ବିତାଡ଼ିତ ହେଲେ । ଜର୍ମାନୀର ଜନତା ସରକାର ବିରୁଦ୍ଧରେ ବିପ୍ଳବ କରେ । ସେମାନେ ସରକାରୀ କର୍ତ୍ତୃପକ୍ଷଙ୍କ ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କଲେ । ସେତେବେଳେ ଜର୍ମାନୀରେ ଏକଚ୍ଛତ୍ରବାଦୀ ଶାସନ ଚାଲିଥାଏ । ଶେଷରେ ଜର୍ମାନୀର ଜନତା ହିଂସାକାଣ୍ଡର ଆଶ୍ରୟ ନେଲେ । ସେମାନେ ସହରର ମ୍ୟୁନିସିପାଲିଟି ଅଫିସଗୁଡ଼ିକ ଉପରେ ଆକ୍ରମଣ କଲେ । ଡେମଲାରଙ୍କର ପିତା ଦେଖିଲେ ଏପରି ଏକ ଅଶାନ୍ତ ସମୟରେ ପୁଅକୁ ସେନାରେ ଯୋଗ ଦେବାପାଇଁ ଉତ୍ସାହିତ କରିବା ଭଲ ହେବ ନାହିଁ । କିନ୍ତୁ ବନ୍ଧୁକ ତିଆରି କରି ଶିଖାଇଲେ ସେ ଭବିଷ୍ୟତରେ ବିପୁଳ ଧନ ଉପାର୍ଜନ କରିବ । କାରଣ ଭବିଷ୍ୟତରେ ଯୁଦ୍ଧ ନିଶ୍ଚୟ ଲାଗିବ । ଯୁଦ୍ଧ ନିମନ୍ତେ ବହୁ ବନ୍ଧୁକ ଗୁଳି ଦରକାର ହେବ ।

ବାପାଙ୍କର ଏ ପ୍ରସ୍ତାବରେ ଡେମଲାର କୌଣସି ଆପତ୍ତି କଲେ ନାହିଁ । ସେ ଷ୍ଟାରନ ବେରଫଠାରେ ବିଖ୍ୟାତ କାରିଗର ହେଭ୍ରମାନେ ରାଇଥେଲଙ୍କ ପାଖରେ ବନ୍ଧୁକ ତିଆରି କାମ ଶିଖିଲେ । ତାଙ୍କର ଏ କାର୍ଯ୍ୟ ପ୍ରତି ପ୍ରବଳ ଆଗ୍ରହ ଥିଲା । ସେ ବନ୍ଧୁକ ଓ ପିସ୍ତଲର ଅଂଶମାନ ତିଆରି କଲେ । ସେତେବେଳେ ଯାନ୍ତ୍ରିକ ବିପ୍ଳବ ଆରମ୍ଭ ହୋଇଥାଏ । ଚାଷୀମାନଙ୍କ ପାଇଁ ବିଭିନ୍ନ ପ୍ରକାର କୃଷି ଯନ୍ତ୍ରପାତି ଆବଶ୍ୟକ ହେଉଥାଏ । ଡେମଲାର ଦିନେ ଭାବିଥିଲେ—ସୈନିକ ହେଲେ ଦେଶ ସେବା କରି ସେ ଆନନ୍ଦ ଲାଭ କରିବେ; କିନ୍ତୁ ବନ୍ଧୁକ ତିଆରି କାମରେ ସେ ତା ଅପେକ୍ଷା ଅଧିକ ଆନନ୍ଦ ଲାଭ କଲେ । ସେ ମନପ୍ରାଣ ଲଗାଇ କାମ କଲେ । ମନ ସର୍ବଦା ଆନନ୍ଦିତ ଥିବାରୁ କାମ କରିବା ପାଇଁ ଉତ୍ସାହ ମିଳୁଥିଲା । ସେ ସର୍ବଦା ନିଜକୁ କାର୍ଯ୍ୟବ୍ୟସ୍ତ ରଖୁଥିଲେ ଓ ନିଜର ବ୍ୟକ୍ତିତ୍ୱକୁ ଉପଯୁକ୍ତ ସମ୍ମାନ ଦେଉଥିଲେ । କାମ ପ୍ରତି ପ୍ରବଳ ଆଗ୍ରହ ଥିବାରୁ ସେ ଅଳ୍ପଦିନ ଭିତରେ ବହୁତ ପ୍ରକାର କାମ ଶିକ୍ଷା କରିପାରିଥିଲେ ।

ଦିନେ ଡେମଲାର ଭାବିଲେ କାହାରି ସାହାଯ୍ୟ ନ ନେଇ ଗୋଟାଏ କିଛି ନୂଆ ଜିନିଷ ତିଆରି କଲେ ଭଲ ହୁଅନ୍ତା । ସେ ଯାହା ଭାବୁଥିଲେ ତାକୁ ସଙ୍ଗେ ସଙ୍ଗେ

କାର୍ଯ୍ୟରେ ପରିଣତ କରୁଥିଲେ । ସେତେବେଳେ ବିଜ୍ଞାନର ପୂର୍ଣ୍ଣ ଅଭ୍ୟୁଦୟ ହୋଇ-ନଥାଏ । ଲୋକେ କୌଣସି ନୂଆ କାମ କରିବା ପାଇଁ ଉତ୍ସାହ ଦେଖାଉ ନଥାନ୍ତି । ଏଣୁ କୌଣସି ନୂଆ ଜିନିଷ ତିଆରି କରିବା ପାଇଁ ପ୍ରବଳ ଇଚ୍ଛା ଥିଲେ ମଧ୍ୟ ଡେମଲାର ତାକୁ କାର୍ଯ୍ୟରେ ପରିଣତ କରିପାରି ନ ଥିଲେ । କିନ୍ତୁ ତାଙ୍କର ବ୍ୟାକୁଳତା ବୃଦ୍ଧି ପାଇଲା । ନିଜର ଦକ୍ଷତା ଓ ହସ୍ତର ନିପୁଣତା ପ୍ରଦର୍ଶନ କରିବା ପାଇଁ ସେ ବ୍ୟାକୁଳ ହୋଇ-ଉଠିଲେ । ଶେଷରେ ସେ କାମରେ ଲାଗିପଡ଼ିଲେ । ଅକ୍ଳାନ୍ତ ପରିଶ୍ରମ କରି ସେ 'ପମ୍ପ ପାଇପ' ନାମକ ଯନ୍ତ୍ରଟିଏ ନିର୍ମାଣ କଲେ । ଏହା ତାଙ୍କ ଶିକ୍ଷା ଜୀବନର ପ୍ରଥମ ଆବିଷ୍କାର ।

ସେ ଯନ୍ତ୍ରଟିକୁ ଆହୁରି ଭଲ କରିବା ପାଇଁ ଚେଷ୍ଟା କଲେ । ତାଙ୍କର ଏହି ଅଧ୍ୟବସାୟ ଓ ଏକାଗ୍ରତା ତାଙ୍କ ପାଇଁ ଏକ ଉଜ୍ଜ୍ୱଳ ଭବିଷ୍ୟତର ଦ୍ୱାର ଖୋଲିଦେଲା । ଏହା ଦେଖି ତାଙ୍କର ମାଲିକ ରଇଥେଲ ବଡ ଆନନ୍ଦିତ ହେଲେ ଓ ସେ ଡେମଲାରଙ୍କୁ ଉଚ୍ଚ ପ୍ରଶଂସା କଲେ । ସେ ଡେମଲାରଙ୍କୁ ଉଚ୍ଚ ବେତନରେ ଏକ ସ୍ଥାୟୀ ଚାକିରିରେ ନିଯୁକ୍ତ କଲେ ।

ସେତେବେଳକୁ ଶିକ୍ଷାର୍ଥୀ ରୂପେ ଡେମଲାର ସୁବିଶେଷ କାମ କରିସାରି ଥାଆନ୍ତି । ରଇଥେଲଙ୍କ ପାଖରେ ଚାକିରି କରିବା ପାଇଁ ତାଙ୍କୁ ଭଲ ଲାଗିଲା ନାହିଁ । ଜୀବନରେ ଅଭିଜ୍ଞତା ଓ ଜ୍ଞାନ ଅର୍ଜନ କରି ଉଚ୍ଚରୁ ଉଚ୍ଚତର ସ୍ଥାନକୁ ଯିବା ତାଙ୍କର ଲକ୍ଷ୍ୟ ଥିଲା । ସେ ଚାକିରି ଛାଡ଼ିଦେଲେ । ସେ ସ୍ୱାଧୀନ ଭାବରେ ଷ୍ଟୁଟ ଗାର୍ଟଠାରେ ବନ୍ଧୁକ ତିଆରି କାମ କରିବାକୁ ଲାଗିଲେ । ୟିଲିକ ନାମକ ଜଣେ ବ୍ୟକ୍ତି ତାଙ୍କର ସହକର୍ମୀ ଥିଲେ ।

ୟିଲିକ ଚତୁର ବ୍ୟକ୍ତି । ଜର୍ମାନ କୋର୍ଟଙ୍କ ସହିତ ତାଙ୍କର ସମ୍ପର୍କ ଥିଲା । ଏଣୁ ବଡ ବଡ ଅଫିସରମାନଙ୍କ ସହିତ ତାଙ୍କର ପରିଚୟ ଥିଲା । ସେହି ଅଫିସରମାନଙ୍କ ଭିତରେ ଷ୍ଟେଇନ ବେଇସ ନାମକ ଜଣେ ବ୍ୟକ୍ତି ଥିଲେ । ସେ ଜଣେ ଉଚ୍ଚ ରାଜକର୍ମଚାରୀ । ଜର୍ମାନୀର ସମ୍ରାଟଙ୍କର କେନ୍ଦ୍ର ଅଫିସର ଶିଳ୍ପ ଓ ବାଣିଜ୍ୟ ବିଭାଗର ସେ ଥିଲେ ଟେକ୍‌ନିକାଲ ଚେୟାରମ୍ୟାନ ।

ଜର୍ମାନୀ ସେତେବେଳେ ୟୁରୋପୀୟ ଦେଶମାନଙ୍କ ସହିତ ଶିଳ୍ପ ପ୍ରତି-ଯୋଗିତାରେ ବ୍ୟସ୍ତ ଥାଏ । ୟୁରୋପର ଦେଶମାନଙ୍କ ଭିତରେ କାଳେ ଜର୍ମାନୀ ଶିଳ୍ପ ପଛରେ ପଡ଼ିଯିବ ସେଥିନିମନ୍ତେ ସରକାର କାର୍ଯ୍ୟର ସୁପରିଚାଳନା ପାଇଁ କଠୋର ବ୍ୟବସ୍ଥା କରିଥାଆନ୍ତି । ଷ୍ଟେଇନବେଇନ, ଦକ୍ଷ ଜର୍ମାନ ଯୁବକମାନଙ୍କୁ ଅନ୍ୟ ଦେଶମାନଙ୍କୁ ପଠାଇ ଶିଳ୍ପ ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିବା ଓ ତଦନୁଯାୟୀ ଜର୍ମାନ ଶିଳ୍ପ ସମୃଦ୍ଧିରେ ଲାଗିପଡ଼ ଥାଆନ୍ତି ।

ଡେମଲାରଙ୍କର ବୟସ ସେତେବେଳେ ଅଠର ବର୍ଷ । ସେ ୟିଲିକଙ୍କର

କାରଖାନାରେ କାମ କରୁଥାଆନ୍ତି । ଷ୍ଟେଇନବେଇସଙ୍କ ସହିତ ତାଙ୍କର ପ୍ରଥମ ସାକ୍ଷାତ ହେଲା । ଡେମଲାରଙ୍କର କର୍ମଦକ୍ଷତା ଦେଖି ଷ୍ଟେଇନବେଇସ ମୁଗ୍ଧ ଓ ବିସ୍ମିତ ହେଲେ । ସେ ବୁଝିପାରିଲେ ସାମାନ୍ୟ ଅନୁଭୂତି ପରେ ଡେମଲାର ଯେକୌଣସି ଦକ୍ଷ ଯୁବକ-ମାନଙ୍କର ସମକକ୍ଷ ହୋଇ ପାରିବେ, କିନ୍ତୁ ସେ ଏକଥା ପ୍ରକାଶ କଲେ ନାହିଁ । ସେ ଡେମଲାରଙ୍କର କାର୍ଯ୍ୟରେ ଅଗ୍ରଗତି ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଲେ ।

ସେତେବେଳେ ଡେମଲାରଙ୍କର ବୟସ ୧୯ ବର୍ଷ । ବନ୍ଧୁକ ତିଆରି କାମ ଆଉ ତାଙ୍କୁ ଭଲ ଲାଗିଲା ନାହିଁ । ସେ ବନ୍ଧୁକ ତିଆରି କାମ ଛାଡ଼ିଦେଇ ଇଞ୍ଜିନିଅରିଂ ଶିକ୍ଷା କରିବା ପାଇଁ ସ୍ଥିର କଲେ । ସେତେବେଳକୁ ୟିଲିକଙ୍କ କାରଖାନାରେ ତାଙ୍କର ଗୋଟିଏ ବର୍ଷ ପୂର୍ଣ୍ଣ ହୋଇଯାଇଥାଏ ।

ଇଞ୍ଜିନିଅରିଂ ଶିକ୍ଷା କରିବା ପାଇଁ ଡେମଲାର ଷ୍ଟ୍ରାସ୍‌ବର୍ଗ ଆସିଲେ । ଜଣେ ସାଧାରଣ ମେକାନିକ ଭାବରେ ତାଙ୍କୁ ଇଞ୍ଜିନିୟରିଂ କାମଟିଏ ମିଳିଗଲା । ଏଥର କାର୍ଯ୍ୟ କ୍ଷେତ୍ର ଟିକିଏ ପ୍ରଶସ୍ତ ହେଲା । ପୋଲ ତିଆରି, ରେଳ ଡବା ଓ ସିଗାରେଟ ତିଆରି ଯନ୍ତ୍ର ନିର୍ମାଣ କାର୍ଯ୍ୟ ସେ କରିବାକୁ ଲାଗିଲେ । ଏସବୁ କାମ ବନ୍ଧୁକ ତିଆରି କାମଠାରୁ ସମ୍ପୂର୍ଣ୍ଣ ପୃଥକ । ଡେମଲାର କଠିନ ପରିଶ୍ରମୀ ହେଲେ ମଧ୍ୟ ଏ ସବୁ କାମ ତାଙ୍କୁ ବଡ଼ କଷ୍ଟକର ମନେ ହେଲା । ସେ ମନେ ମନେ ବିରକ୍ତ ହୋଇଉଠିଲେ । କଠିନ ପରିଶ୍ରମ ଭିତରେ ବିଶ୍ରାମ ଓ ଅବସର ଆବଶ୍ୟକ, କିନ୍ତୁ ଡେମଲାରଙ୍କୁ ଆବଶ୍ୟକୀୟ ଅବସର ମିଳିଲା ନାହିଁ । ତାଙ୍କୁ ପ୍ରାୟ ଭୋରରୁ ଅର୍ଦ୍ଧ ରାତ୍ରି ପର୍ଯ୍ୟନ୍ତ କାମ କରିବାକୁ ପଡ଼େ । କେବଳ ଖାଇବା ପାଇଁ ଟିକିଏ ସମୟ ମିଳେ । ଡେମଲାର କିନ୍ତୁ ଏତେ କଷ୍ଟ ଭିତରେ ଭାଙ୍ଗି ପଡ଼ିଲେ ନାହିଁ । କାମ ଶେଷ ହେବା ମାତ୍ରେ ସେ ନୂଆ କାମ କରିବା ପାଇଁ ଦୁଇଗୁଣ ଉତ୍ସାହରେ ବାହାରି ପଡ଼ନ୍ତି । ତାଙ୍କର ଅସାଧାରଣ କର୍ମଦକ୍ଷତା ଦେଖି ସମସ୍ତେ ବିସ୍ମିତ ହେଉଥିଲେ । ସେ କାରଖାନାରେ ଶହ ଶହ ବ୍ୟକ୍ତି କାମ କରୁଥିଲେ । କିନ୍ତୁ ଡେମଲାର ଥିଲେ ସେମାନଙ୍କ ମଧ୍ୟରେ ଆଗୁଆ । ସମସ୍ତେ ଭାବୁଥିଲେ ଡେମଲାର ଯେପରି କଠିନ ପରିଶ୍ରମ କରୁଛନ୍ତି, ତା ଫଳରେ ସେ ଖୁବ୍ ଶୀଘ୍ର ମରିଯିବେ ।

ଡେମଲାରଙ୍କର ଇଞ୍ଜିନିୟରିଂ ବିଷୟ ପଢ଼ିବା ପାଇଁ ପ୍ରବଳ ଇଚ୍ଛା ଥିଲା । କିନ୍ତୁ ଦୀର୍ଘ ସମୟ ପରିଶ୍ରମ କରି ସେ କ୍ଳାନ୍ତ ହୋଇ ପଡୁଥିଲେ । ଏଣୁ ପଢାପଢ଼ି ନିମନ୍ତେ ସମୟ ମିଳୁ ନ ଥିଲା । କାମ ପୂର୍ବଭଳି ଚାଲିଲା । କଠିନ ପରିଶ୍ରମ କରିବାକୁ ପଡ଼ିଲେ ମଧ୍ୟ ଡେମଲାରଙ୍କୁ ସନ୍ଧ୍ୟା ପରେ କାମକୁ ଯିବାକୁ ପଡ଼ିଲା ନାହିଁ । ସେ ଯେଉଁଠାରେ ରହୁଥିଲେ ତା ନିକଟରେ ଗୋଟିଏ ମେକାନିକାଲ ଟ୍ରେନିଂ କଲେଜ ଥିଲା । ସନ୍ଧ୍ୟା ପରେ ସେ ସେହି କଲେଜକୁ ପଢ଼ିବା ପାଇଁ ଗଲେ । ଇଞ୍ଜିନିୟରିଂ ପଢ଼ିବା ତାଙ୍କର ଲକ୍ଷ୍ୟ ଥିଲା ।

କିନ୍ତୁ ଇଞ୍ଜିନିୟରିଂ ପାଠ ତ ଏତେ ସହଜ ନୁହେଁ, ସାରାଦିନ କଠିନ ପରିଶ୍ରମ କରିବା ପରେ ଠିକ୍ ସମୟରେ କଲେଜକୁ ଯାଇ ପ୍ରବୀଣ ଇଞ୍ଜିନିୟରମାନଙ୍କର କାର୍ଯ୍ୟ ଶିକ୍ଷା କରିବା ଓ ଲେକ୍‌ଚର ଶୁଣି ମନେରଖିବା ସହଜ କଥା ନୁହେଁ । କାମ କରିବାକୁ ତ ହେବ ; ଏଣୁ ସମୟ ସମୟରେ ସେ କଲେଜ ଛୁଟି ହେବା ପୂର୍ବରୁ କ୍ଲାସ ଛାଡ଼ି କାମକୁ ଚାଲିଯାଆନ୍ତି ।

ଡେମଲାର ରାତିରେ ଶାନ୍ତିରେ ଶୋଇ ପାରନ୍ତି ନାହିଁ । ରାତି ଅଧରେ ଉଠି ପଡ଼ନ୍ତି । ଇଂଜିନିୟରିଂ ପ୍ରତି ଡେମଲାରଙ୍କର ଆଗ୍ରହ ଦିନକୁ ଦିନ ବୃଦ୍ଧି ପାଇଲା । ସେ ଷ୍ଟଟ ଗାର୍ଟ ପଲିଟେକନିକ କଲେଜରେ ଇଂଜିନିୟରିଂ ଶିକ୍ଷା କରିବା ପାଇଁ ସ୍ଥିର କଲେ । ଏ କଲେଜ ଷ୍ଟଟ ଗାର୍ଟ ବିଶ୍ୱବିଦ୍ୟାଳୟ ଦ୍ୱାରା ପରିଚାଳିତ ହେଉଥିଲା । କିନ୍ତୁ ଗୋଟିଏ ସମସ୍ୟା ଡେମଲାରଙ୍କର ସମ୍ମୁଖରେ ଦେଖାଦେଲା । କଲେଜରେ ପଢ଼ିଲେ ପ୍ରଥମେ ଫିସ୍ ଦେବାକୁ ପଡ଼ିବ । ଅନ୍ୟ ଉପାୟ ନ ଦେଖି ଡେମଲାର ନିଜ ମଜୁରୀରୁ କିଛି କିଛି ସଞ୍ଚୟ କଲେ । ସବୁ କିଛି ବାଧାବିଘ୍ନ ଅତିକ୍ରମ କରି ପଢ଼ିବା ପାଇଁ ଡେମଲର ଦୃଢ଼ସଙ୍କଳ୍ପ ହେଲେ ।

ଡେମଲାର ବୁଝିପାରିଲେ ତାଙ୍କର ସଞ୍ଚିତ ଧନ କଲେଜ ଶିକ୍ଷା ନିମନ୍ତେ ଯଥେଷ୍ଟ ହେବ ନାହିଁ । ସେ ନିଜ ବାପାଙ୍କ ପାଖକୁ ଚିଠି ଲେଖିଲେ । ତାଙ୍କର ବାପା ହଷ୍ଟେଲ ଖର୍ଚ୍ଚ ଯୋଗାଇ ଦେବାପାଇଁ ସମ୍ମତ ହେଲେ । ଏ ତ ଗଲା ହଷ୍ଟେଲ ଖର୍ଚ୍ଚ । କିନ୍ତୁ ଦୁଇ ବର୍ଷ ଭିତରେ କଲେଜ ଦରମା କିପରି ଦେବେ ଡେମଲର ତାହାହିଁ ଚିନ୍ତା କରିବାକୁ ଲାଗିଲେ । ଇଚ୍ଛା ଥିଲେ ଉପାୟ ଆପେ ଆପେ ଆସେ । ତାଙ୍କର ଶୁଭେଚ୍ଛୁ ଡକ୍ଟର ଷ୍ଟେଇନ ବେଇସ, ଡେମଲାରଙ୍କର ଅସୁବିଧା କଥା ଜାଣିପାରିଲେ । ସେ ତାଙ୍କୁ ଆର୍ଥିକ ସାହାଯ୍ୟ ଦେବାପାଇଁ ସମ୍ମତ ହେଲେ ।

ଏ ତ ଗଲା ଆର୍ଥିକ ସମସ୍ୟା କଥା । ଡେମଲାରଙ୍କ ସମ୍ମୁଖରେ ଆଉ ଏକ ସମସ୍ୟା ଦେଖାଦେଲା । ସେତେବେଳେ ପଲିଟେକନିକ କଲେଜରେ ପ୍ରବେଶ କରିବା ସହଜ ବ୍ୟାପାର ନଥିଲା । ବିଶ୍ୱବିଦ୍ୟାଳୟର ନିୟମ ଅନୁସାର ତିନିଜଣ ଛାତ୍ର କଲେଜ ଫିସ ଦେଇ ପଢୁଥିଲେ ଓ ଅନ୍ୟ ୨୮ ଜଣ ଛାତ୍ର ସ୍ୱତନ୍ତ୍ର ଭାବରେ ପଢୁଥିଲେ । ଏ ୨୮ ଜଣଙ୍କୁ ଫିସ୍ ଦେବାକୁ ପଡୁ ନ ଥିଲା । ଡେମଲାର ସ୍ୱତନ୍ତ୍ର ଛାତ୍ରରୂପେ ପଢ଼ିବାପାଇଁ ଇଚ୍ଛା କଲେ । ସେ ଏଇକଥା ଷ୍ଟେଇନ ବେଇସଙ୍କୁ କହିଲେ । ଷ୍ଟେଇନ ବେଇସ ବୁଝିପାରିଲେ ଡେମଲର ପଢ଼ିବାପାଇଁ ବଡ ଆଗ୍ରହୀ । ସେ ଡେମଲାରଙ୍କୁ ଜଣେ ସ୍ୱତନ୍ତ୍ର ଛାତ୍ର ରୂପେ ଗ୍ରହଣ କରିବାପାଇଁ ଡେମଲାରଙ୍କୁ ଅନୁରୋଧ କଲେ । ଷ୍ଟେଇନ ବେଇସ ଜାଣିଥିଲେ ଡେମଲାରଙ୍କର ଆକାଂକ୍ଷା ବଡ଼ ଉଚ୍ଚ । ପଢ଼ିବା ଦ୍ୱାରା ତାଙ୍କର ପ୍ରତିଭା ବିକଶିତ ହେବ ।

ଶେଷରେ ଡେମଲାରଙ୍କର ଇଚ୍ଛା ପୂର୍ଣ୍ଣ ହେଲା । ୧୮୫୭ ମସିହାରେ ସେ ସୁକିରି

ଛାଡ଼ଦେଇ କଲେଜରେ ଅଧ୍ୟୟନ କଲେ । ୧୮୫୯ ମସିହାରେ ଡେମଲାର ଜର୍ମାନୀ ଛାଡ଼ିଲେ । ସେ ସମୟରେ ଜୋସେଫ ଉଇଟ୍‌ଓ୍ୱାର୍ଥ ନାମକ ଜଣେ ବିଖ୍ୟାତ ଇଞ୍ଜିନିୟର ଏକ ନୂତନ ଧରଣର ରାଇଫଲ ଆବିଷ୍କାର କରିଥାଆନ୍ତି । ଡେମଲାର ତାଙ୍କର ସହକାରୀ ରୂପେ କାମ କରିବାକୁ ଲାଗିଲେ । ଜୋସେଫ ଜଣେ ସମ୍ପନ୍ନ ବ୍ୟକ୍ତି । ତାଙ୍କର ବର୍ମିଂହାମରେ ଗୋଟିଏ ଓ କୋଭେନଟ୍ରିରେ ଗୋଟିଏ କାରଖାନା ଥାଏ । ଡେମଲାରଙ୍କର ଅସାଧାରଣ ପ୍ରତିଭା ଦେଖି ଜୋସେଫ ତାଙ୍କୁ ଦୁଇଟିଯାକ କାରଖାନାରେ କାମ କରିବା ପାଇଁ ଅନୁରୋଧ କଲେ । ଜୋସେଫଙ୍କର ଅନୁରୋଧ ପ୍ରତ୍ୟାଖ୍ୟାନ ନକରି ଡେମଲର ଦୁଇଟିଯାକ କାରଖାନାରେ କାମ କରିବାକୁ ଲାଗିଲେ । ଏ କାରଖାନା ଦୁଇଟିରେ ବ୍ରିଟିଶମାନଙ୍କର ଛୋଟ ଛୋଟ୍ ଅସ୍ତ୍ର ତିଆରି ହେଉଥାଏ । ସେଠାରେ ସେ ଏହି ଅସ୍ତ୍ର ତିଆରି ପ୍ରଣାଳୀ ଶିକ୍ଷା କଲେ ଓ ତା ସହିତ ଜର୍ମାନୀର ରାଇଫେଲ ଏବଂ ସ୍ୱିଲିଙ୍କର ବନ୍ଧୁକ ତିଆରି ପ୍ରଣାଳୀ ସେ ତୁଳନା କଲେ ।

ଆବଶ୍ୟକୀୟ କାରିଗରି ଜ୍ଞାନ ଅର୍ଜନ କରିସାରିବା ପରେ ଡେମଲାର ଇଂଲଣ୍ଡ ଛାଡ଼ିଲେ, କିନ୍ତୁ ଷ୍ଟେଇନବେଇସ ଏତିକିରେ ସନ୍ତୁଷ୍ଟ ହେଲେ ନାହିଁ । ସେ ଡେମଲରଙ୍କୁ ଯଥେଷ୍ଟ ଆର୍ଥିକ ସାହାଯ୍ୟ ଦେଲେ । ସେହି ସାହାଯ୍ୟରେ ବିଭିନ୍ନ ଯନ୍ତ୍ର ଓ ଉପକରଣ ନିର୍ମାଣ ଜ୍ଞାନ ଅର୍ଜନ କରିବା ପାଇଁ ଡେମଲର ବିଭିନ୍ନ ଦେଶ ଘୂରି ବୁଲିଲେ । ସେ ଇଂଲଣ୍ଡରୁ ଆଲସ୍କା ଓ ସେଠାରୁ ଫ୍ରାନ୍ସ ଯାଇ ନୂତନ ପ୍ରଣାଳୀମାନ ଶିକ୍ଷା କଲେ । ଫ୍ରାନ୍ସ ଡେମଲରଙ୍କୁ ଖୁବ୍ ଭଲ ଲାଗିଲା । ଫ୍ରାନ୍ସ ବାସୀଙ୍କର ବ୍ୟବହାର ତାଙ୍କୁ ମୁଗ୍ଧ କଲା । ଫ୍ରାନ୍ସରେ ରହିଥିବା ସମୟରେ ସେ ଫରାସୀ ଭାଷା ଶିକ୍ଷା କରି ସେ ଭାଷାରେ ଜଣେ ପଣ୍ଡିତ ହୋଇପାରିଥିଲେ । ଫରାସୀ ଭାଷା ଜ୍ଞାନ ଭବିଷ୍ୟତରେ ତାଙ୍କୁ ବଡ଼ ସାହାଯ୍ୟ କଲା । ଫ୍ରାନ୍ସରେ କାର୍ଯ୍ୟ ଶେଷ କରି ଡେମଲର ବେଲଜିୟମ ଯାତ୍ରା କଲେ । ବେଲଜିୟମରେ ନୂତନ ଧରଣର କାରିଗରି ପ୍ରଣାଳୀ ଶିକ୍ଷାକରି ସେ ଜର୍ମାନୀ ଫେରି-ଆସିଲେ ।

କାରିଗରି ଜ୍ଞାନ ଅର୍ଜନ କରିବା ପାଇଁ ଡେମଲରଙ୍କୁ ଆଠ ବର୍ଷ କାଳ ବିଦେଶ ଭ୍ରମଣ କରିବାକୁ ପଡ଼ିଥିଲା । ତାଙ୍କର ଜ୍ଞାନର ବିକାଶରେ ଏହି ବିଦେଶ ଭ୍ରମଣ ଥିଲା ସର୍ବାପେକ୍ଷା ମହତ୍ତ୍ୱପୂର୍ଣ୍ଣ ସାହାଯ୍ୟ । ସ୍ୱଦେଶକୁ ଫେରିଲା ବେଳକୁ ସେ ଶିଳ୍ପ ଓ ଇଞ୍ଜିନିଅରିଙ୍ଗରେ ଅଦ୍ଭୁତ ଜ୍ଞାନ ଅର୍ଜନ କରିସାରିଥିଲେ । ୧୮୬୭ ମସିହାରେ ଡେମଲାର ଜର୍ମାନୀ ଫେରି ଆସିଲେ । ସେତେବେଳେ ତାଙ୍କର ବୟସ ୩୩ ବର୍ଷ । ସେ ବିଦେଶରେ ରହି ଅଗାଧ ଜ୍ଞାନ ଅର୍ଜନ କରିଥିଲେ । ବିଦେଶ ଭ୍ରମଣ କେବଳ ତାଙ୍କର ଜ୍ଞାନ ଭଣ୍ଡାରକୁ ସମୃଦ୍ଧ କରି ନଥିଲା । ତାଙ୍କର ଚେହେରା ଓ ପୋଷାକପତ୍ରକୁ ମଧ୍ୟ ବଦଳାଇ ଦେଇଥିଲା । ଅବଶ୍ୟ ସେ ଯୌବନର ସୀମା ଅତିକ୍ରମ କରିସାରିଥିଲେ । ତଥାପି ଯୁବକ ସୁଲଭ ଭାବ ତାଙ୍କ ସ୍ୱଭାବରେ ଲାଗି ରହିଥିଲା ।

ଡେମଲାରଙ୍କର ଚରିତ୍ରରେ ଗୋଟିଏ ବିଶେଷତ୍ୱ ଥିଲା । ସେ ଥରେ ଯାହା ସହିତ ମିଶୁଥିଲେ, ଜୀବନସାରା ତା ସହିତ ବନ୍ଧୁତ୍ୱ ରକ୍ଷା କରୁଥିଲେ । ସେ ସମସ୍ତଙ୍କୁ ବିଶ୍ୱାସ କରୁଥିଲେ । କାହାରିକୁ ଅବିଶ୍ୱାସ କରିବା ମହାପାପ ବୋଲି ସେ ମନେ କରୁଥିଲେ । ଡେମଲାରଙ୍କୁ ସମସ୍ତେ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । ତାଙ୍କର ମଧୁର ବ୍ୟବହାର ଓ ସରଳ ସରଳ କଥାବାର୍ତ୍ତା ସମସ୍ତଙ୍କୁ ମୁଗ୍ଧ କରୁଥିଲା । ଥରେ ସେ ଯାହାଠାରୁ ସାହାଯ୍ୟ ଓ ସହାନୁଭୂତି ପାଉଥିଲେ । ଜୀବନସାରା ତା ପ୍ରତି କୃତଜ୍ଞ ରହୁଥିଲେ । ଡେମଲାର ଭବିଷ୍ୟତରେ ଜଣେ ବିଶ୍ୱବିଖ୍ୟାତ ବୈଜ୍ଞାନିକ ହେଲେ; କିନ୍ତୁ ଶେଷ ପର୍ଯ୍ୟନ୍ତ ସେ ତାଙ୍କର ସାହାଯ୍ୟଦାତା ରଇଥେଲ ଓ ସ୍ମିଲିକଙ୍କୁ ଶ୍ରଦ୍ଧା ଓ ସମ୍ମାନ ଦେଇଯାଇଛନ୍ତି ।

ଡେମଲାର ଏଥର ବିବାହ କରିବା କଥା ଚିନ୍ତା କଲେ । ଜୀବନର ପୂର୍ଣ୍ଣ ବିକାଶ ନିମନ୍ତେ ବିବାହ ଆବଶ୍ୟକ । ଜର୍ମାନୀରୁ ଫେରିବାର ଅଳ୍ପଦିନ ପରେ ସେ ଜଣେ ରସାୟନବିଦ୍‌ଙ୍କର କନ୍ୟା ଇମାକୁର୍ଜଙ୍କୁ ବିବାହ କଲେ । ଇମାକୁର୍ଜ ବୟସରେ ଡେମଲରଙ୍କଠାରୁ ନଅ ବର୍ଷ ସାନ । ୧୮୬୭ ମସିହା ନଭେମ୍ବର ନଅ ତାରିଖ ଦିନ ଦୁହିଁଙ୍କର ବିବାହ ସମ୍ପନ୍ନ ହେଲା ।

ଡେମଲାରଙ୍କର ବୈବାହିକ ଜୀବନ ସୁଖ ଶାନ୍ତିପୂର୍ଣ୍ଣ ଥିଲା । ବିବାହ ପରେ ପାଞ୍ଚ ବର୍ଷ ମଧ୍ୟରେ ଡେମଲର ଦୁଇଥର ଚାକିରି ପରିବର୍ତ୍ତନ କରିଥିଲେ । ବିବାହ ସମୟରେ ଡେମଲାର ଗୋଟିଏ ରେଳ ଇଞ୍ଜିନ କାରଖାନାରେ ଫୋରମ୍ୟାନ କାମ କରୁଥିଲେ । ଭିଲିଏମ ମେବେଚ ନାମକ ଜଣେ ବ୍ୟକ୍ତି ସେହି କାରଖାନାର କର୍ମଚାରୀ ଥିଲେ । ଡେମଲାରଙ୍କ ସହିତ ତାଙ୍କର ବନ୍ଧୁତ୍ୱ ସମ୍ପର୍କ ସ୍ଥାପିତ ହେଲା । ଏହି ବନ୍ଧୁତ୍ୱ ତାଙ୍କର ସାରଜୀବନ ଉପରେ ବଡ ସୁପ୍ରଭାବ ପକାଇଥିଲା ।

ରେଳ ଇଞ୍ଜିନ କାରଖାନାରେ ଦୁଇ ବର୍ଷ କାର୍ଯ୍ୟ କଲାପରେ ସେ ଏକ ସମ୍ମାନ ଜନକ ନିଯୁକ୍ତି ପାଇଲେ । ତାଙ୍କୁ କାରଲସ ରୁହୁରେ ଇଞ୍ଜିନିୟରିଂ ଟେକ୍‌ନିକାଲ ଡିରେକ୍ଟର ରୂପେ ନିଯୁକ୍ତ କରଗଲା । ଏହା ପରେ ଡେମଲରଙ୍କ ର ଜୀବନରେ ସୁଯୋଗ ପରେ ସୁଯୋଗ ଆସିଲା । ନିକୋଲାସ ଓଟୋ ଏବଂ ଯୁଗନ୍ ଲେଗନ୍ ଫୋରଷ୍ଟାକ ଗ୍ୟାସ ଇଞ୍ଜିନ ଆବିଷ୍କାର କରିଥିଲେ । ସେମାନେ କୋଲଗନସ୍ଥିତ ଡ୍ୟୁଟ୍ ଜଠାରେ ଗୋଟି କାରଖାନା ଖୋଲିବା ପାଇଁ ସ୍ଥିର କଲେ । ଇଞ୍ଜିନ ସମ୍ପର୍କୀୟ ଯନ୍ତ୍ରପାତିର ଉ କରିବା ଥିଲା ଏ କାରଖାନାର ଲକ୍ଷ୍ୟ । ଡେମଲାର ପୂର୍ବରୁ କର୍ମଦକ୍ଷ ଥିଲେ । ଜଣେ ... ଓ ଦକ୍ଷ ମ୍ୟାନେଜର ରୂପେ ତାଙ୍କର ଖ୍ୟାତି ବୃଦ୍ଧି ପାଇଲା ।

ତାଙ୍କର କର୍ମନିପୁଣତା ଓ କର୍ମନିଷ୍ଠା ସହିତ ଓଟୋ ଓ ଲେଗ୍‌ନ ପୂର୍ବରୁ ପରିଚିତ ଥିଲେ । ୧୮୭୨ ଖ୍ରୀଷ୍ଟାବ୍ଦରେ ସେମାନେ ଡେମଲରଙ୍କୁ କହିଲେ—"ଆପଣ ଯାହା

ଦରମା ନେବେ ତାହା ଆମେ ଦେବା ନିମନ୍ତେ ପ୍ରସ୍ତୁତ । ଆପଣ ଆମର ବ୍ୟବସାୟ ପରିଚାଳନାର ଦାୟିତ୍ୱ ଗ୍ରହଣ କରନ୍ତୁ ।"

ଡେମଲାର ପୂର୍ବରୁ ଏହିପରି ଏକ ସ୍ୱପ୍ନ ଦେଖୁଥିଲେ । ଏଣୁ ସେ ଏ ସୁଯୋଗ ହରାଇଲେ ନାହିଁ । ସେ ବ୍ୟବସାୟର ଦାୟିତ୍ୱ ବହନ କରିବା ସଙ୍ଗେ ସଙ୍ଗେ ବନ୍ଧୁ ମେବେଚଙ୍କୁ ପ୍ରଧାନ ଡିଜାଇନର ରୂପେ ନିଯୁକ୍ତ କଲେ । ଡେମଲାର ଜଣେ ଅଭିଜ୍ଞ ବ୍ୟକ୍ତି । ବହୁ କାରଖାନାରେ ସେ ଅନେକ ଲୋକଙ୍କ ସହିତ କାମ କରିଥିଲେ । ଏଣୁ କାହାର କର୍ମକ୍ଷମତା କେତେ ଏହା ତାଙ୍କୁ ଅଜଣା ନ ଥିଲା । ସେ ନିଜର ପରିଚିତ ଦକ୍ଷ କର୍ମଚାରୀମାନଙ୍କୁ ଆଣି ନିଜ ଦାୟିତ୍ୱରେ ଥିବା ବ୍ୟବସାୟ ଓ କାରଖାନାରେ କର୍ମଚାରୀ ରୂପେ ନିଯୁକ୍ତ କଲେ ।

ଡେମଲାର ନିଜେ ଜଣେ ପ୍ରଥମ ଶ୍ରେଣୀର କାରିଗର । ସୁଦକ୍ଷ ମେକାନିକ ନିର୍ବାଚନ କରିବା ତାଙ୍କ ପକ୍ଷରେ କଷ୍ଟକର ହେଲାନାହିଁ । ନୂତନ ବ୍ୟବସାୟଟିର ଦ୍ରୁତ ଉନ୍ନତି ଉଦ୍ଦେଶ୍ୟରେ ସେ ଅପରିସୀମ କର୍ମନିଷ୍ଠା ଓ ଅପୂର୍ବ ଉତ୍ସାହର ସହିତ କାମ ଆରମ୍ଭ କଲେ । ଛୁଟି ନେବାର ସୁଯୋଗ ଥିଲେ ମଧ୍ୟ ସେ ଛୁଟିରେ ରହିବାକୁ ଆଦୌ ଭଲ ପାଉ ନ ଥିଲେ । ବହୁ ରାତି ପର୍ଯ୍ୟନ୍ତ ସେ ଏକାଗ୍ରତା ସହିତ କାର୍ଯ୍ୟ କରୁଥିଲେ । ସେଥିକିରେ ସେ ସନ୍ତୋଷ ଲାଭ କରୁ ନ ଥିଲେ । ବହୁ ଅର୍ଦ୍ଧରାତ୍ରିରୁ ସେ ନିଦ୍ରାରୁ ଉଠି କାମରେ ଲାଗିପଡୁଥିଲେ । ତାଙ୍କର ଏ ଅଦ୍ଭୁତ କର୍ମମୟ ଜୀବନ ସମସ୍ତଙ୍କୁ ବିସ୍ମିତ କରିଦେଲା । ସମସ୍ତେ ଭାବୁଥିଲେ ଡେମଲାର ଭବିଷ୍ୟତରେ ଏକ ଅସମ୍ଭବକୁ ସମ୍ଭବ କରିପାରିବେ ।

ଡେମଲାର ସର୍ବଦା କହୁଥିଲେ "ମୋ ହାତରେ ଯେଉଁ କାମ ଅଛି, ମୁଁ ତାକୁ ଯେ କୌଣସିମତେ କରିବି । ଯେତେ କଷ୍ଟ ହେଲେ ମଧ୍ୟ ମୁଁ ସେ କାମକୁ ଅପୂର୍ଣ୍ଣ ରଖି ଛାଡ଼ିବି ନାହିଁ । ଓଟୋ ଓ ଲେଙ୍ଗନଙ୍କର ବ୍ୟବସାୟର ଦାୟିତ୍ୱ ନେଇ ଡେମଲାର ଦୀର୍ଘ ନଅ ବର୍ଷ କଟାଇ ଦେଲେ । ଡେମଲାରଙ୍କର କାର୍ଯ୍ୟଥିଲା ଅପୂର୍ବ ଓ ଅଦ୍ଭୁତ । ସେ ଏତେ ନିଷ୍ଠା ଓ ନିର୍ଭୁଲ କାମକଲେ ଯେ ସମଗ୍ର ମହାଦେଶରେ ତାଙ୍କର କାରଖାନାଟି ସର୍ବଶ୍ରେଷ୍ଠ କାରଖାନା ରୂପେ ଖ୍ୟାତି ଅର୍ଜନ କଲା । ଡ୍ୟୁଟଜର କାରଖାନାର ଖ୍ୟାତି ଇଂଲଣ୍ଡ, ଫ୍ରାନ୍ସ, ବେଲଜିଅମ ଓ ଆମେରିକା ପ୍ରଭୃତି ଦେଶମାନଙ୍କରେ ପ୍ରତିଷ୍ଠିତ ହେଲା । ସେ ଦେଶମାନଙ୍କରୁ ଶିଳ୍ପବିତ୍‌ମାନେ ଡେମଲାରଙ୍କଠାରୁ ଶିକ୍ଷା ଗ୍ରହଣ କରିବା ଲାଗି ପ୍ରବଳ ଆଗ୍ରହ ପ୍ରକାଶ କଲେ । ଡେମଲାର ଅନ୍ୟମାନଙ୍କ ଭଳି ସଂକୀର୍ଣ୍ଣମନା ନ ଥିଲେ । ନିଜର ପ୍ରଣାଳୀ ସବୁ ଲୁଚାଇ ରଖିବା ପାଇଁ ସେ କେବେହେଲେ ଚେଷ୍ଟା କରୁ ନ ଥିଲେ । ଏଣୁ ସେ ଯାହା ଶିକ୍ଷା କରୁଥିଲେ ତାକୁ ଅନ୍ୟକୁ ଶିକ୍ଷାଦେବା ନିମନ୍ତେ ଟିକେହେଲେ କୁଣ୍ଠାବୋଧ କରୁ ନ ଥିଲେ ।

ଓଟୋ ଓ ଲେଙ୍ଗନ ନିଜ ବ୍ୟବସାୟରେ ଦ୍ରୁତ ପ୍ରଗତି ଦେଖି ବିସ୍ମିତ ହେଲେ । ସେମାନେ ବୁଝିପାରିଲେ ଏ ପ୍ରଗତି ନିମନ୍ତେ ଡେମଲାରଙ୍କର ପ୍ରତିଭା ଓ କର୍ମନିଷ୍ଠା

ଦାୟୀ । ୧୮୮୨ ଖ୍ରୀଷ୍ଟାବ୍ଦରେ ସେମାନେ ବିଭିନ୍ନ ସ୍ଥାନରେ ଏ କାରଖାନାର ଶାଖାମାନ ଖୋଲିବା ନିମନ୍ତେ ସ୍ଥିର କଲେ । ଏଣୁ ଉପଯୁକ୍ତ କ୍ଷେତ୍ର ନିର୍ବାଚନ ପାଇଁ ଅନୁସନ୍ଧାନ ଚାଲିଲା ।

ରୁଷ ଦେଶରେ ବ୍ୟାପକ ତୈଳ କ୍ଷେତ୍ର ଥିଲା । ସେଠାରେ ନିଜ କାରଖାନାର ଏକ ଶାଖା ଖୋଲିବା ପାଇଁ ଓଟୋ ଓ ଲେଙ୍ଗନ ସ୍ଥିରକଲେ । ପ୍ରାଥମିକ ଅନୁସନ୍ଧାନ ନିମଂତେ ସେମାନେ ଡେମଲରଙ୍କୁ ରୁଷ ପଠାଇଲେ । ରୁଷରେ ଛଅମାସ ରହି ଡେମଲର ଅନୁସନ୍ଧାନ କାର୍ଯ୍ୟ ଶେଷକଲେ । ସେଠାରୁ ସେ ରେଡେସିଆ ଗଲେ । କିନ୍ତୁ ଗୋଟିଏ ନୂତନ ଶାଖା ଖୋଲିବା ପାଇଁ ଅନୁକୂଳ ପରିବେଶ ମିଳିଲା ନାହିଁ । ଏହାପରେ ଡେମଲର ଏକ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେଲେ । ବିଭିନ୍ନ କାରଣ ନେଇ ଓଟୋଙ୍କ ସହିତ ତାଙ୍କର କଳହ ହେଲା । ସେଠାରେ ଆଉ ରହିବା ଉଚିତ ମନେ ନକରି ଡେମଲର ଇସ୍ତଫା ଦେଇ ଚାଲିଆସିଲେ ।

ଏହା ପୂର୍ବରୁ ଡେମଲାର ନିଜ ବେତନରୁ କିଛି କିଛି ସଞ୍ଚୟ କରୁଥିଲେ । ସେହି ସେହି ଧନତକ କାରଖାନାର ଅଂଶ ରୂପେ ରହିଥିଲା । ଏଣୁ ପ୍ରତିବର୍ଷ ସେ କାରଖାନାରୁ ଆଶାନୁରୂପ ଅର୍ଥ ପାଉ ନ ଥିଲେ ।

ଡେମଲର ନୈରାଶ୍ୟକୁ କେବେହେଲେ ପ୍ରଶ୍ରୟ ଦେଇ ନାହାନ୍ତି । ଏହାହିଁ ଥିଲା ତାଙ୍କର ଚରିତ୍ରର ବିଶେଷତ୍ୱ । ତାଙ୍କ ପାଖରେ ଆବଶ୍ୟକୀୟ ମୂଳଧନ ନ ଥିଲା । ତଥାପି ସେ ଗୋଟିଏ କାରଖାନା ଖୋଲିବା ପାଇଁ ସ୍ଥିର କଲେ । ଏହା ପୂର୍ବରୁ ଓଟୋ ଓ ଲେଙ୍ଗନ ଯେଉଁ ଇଂଜିନ ତିଆରି କରିଥିଲେ ତାହା ମନ୍ଥର ଗତିରେ ଚାଲୁଥିଲା । ଡେମଲାର ଏକ ଉଚ୍ଚ ଗତିସମ୍ପନ୍ନ ଇଞ୍ଜିନ ନିର୍ମାଣ କରିବା ପାଇଁ ସ୍ଥିର କଲେ ।

ଡେମଲର ଥରେ ଯାହା ନିଷ୍ପତ୍ତି ନେଉଥିଲେ ତାକୁ କାର୍ଯ୍ୟକାରୀ କରିବାପାଇଁ ବିଳମ୍ବ କରୁ ନ ଥିଲେ । ସେ ନିଜର ଗୋଟିଏ କାରଖାନା ଖୋଲିଲେ କିନ୍ତୁ ସେ ବୁଝି ପାରିଲେ ନିଜର ସୀମିତ ଧନ ଭିତରେ କାରଖାନାଟି ଚଳାଇବା ସମ୍ଭବ ହେବନାହିଁ । ଏଣୁ ସେ ବନ୍ଧୁ ମେବେଚଙ୍କୁ ଏଥିରେ ଅଂଶଗ୍ରହଣ କରି ସାହାଯ୍ୟ କରିବା ନିମନ୍ତେ ଅନୁରୋଧ କଲେ । ମେବେଚ ଦୁଃସାହସୀ ନ ଥିଲେ । ଏଣୁ ପ୍ରଥମେ ସେ ଏ ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । ସେ ଭାବିଲେ ଡେମଲରଙ୍କର କାରଖାନା ଏକ ପରୀକ୍ଷାଗାର । ଡେମଲାର ସେହି ପରୀକ୍ଷାଗାର ଭିତରେ ନିଜର ଛୋଟ ଯୋଜନାକୁ କାର୍ଯ୍ୟକାରୀ କରିବା ନିମନ୍ତେ ଉଦ୍ୟମ କରୁଛନ୍ତି । ଏଣୁ ସେଠାରେ କାମକଲେ ଉଚ୍ଚ ଦରମା ମିଳିବ ନାହିଁ ।

କିନ୍ତୁ ମେବେଚ ଏ ପ୍ରସ୍ତାବରେ ସମ୍ମତ ନ ହେଲେ ମଧ୍ୟ ଡେମଲାରଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଶ୍ରଦ୍ଧା ଓ ସମ୍ମାନ ଥିଲା । କିନ୍ତୁ ଡେମଲରଙ୍କର କାରଖାନାର ଆର୍ଥିକ ଉନ୍ନତି ସମ୍ବନ୍ଧରେ ତାଙ୍କର ସନ୍ଦେହ ଥିଲା । ମେବେଚଙ୍କର ଧାରଣା ଭ୍ରମ ଥିଲା । ଡେମ-

ନାରଙ୍କର କର୍ମନିଷ୍ଠା, ଅସୀମ ଧୈର୍ଯ୍ୟ ଓ ଦୁଃସାହସ ହେତୁ ତାଙ୍କର ଯୋଜନାର କ୍ଷିପ୍ର ଅଭିବୃଦ୍ଧି ହେଲା । ଏହା ଦେଖି କାରଖାନାରେ ଅଂଶଗ୍ରହଣ କରିବା ପାଇଁ ମେବେଚ ସମ୍ମତ ହୋଇଗଲେ । ମେବେଚ ଓ ଡେମଲାର ଦୁହେଁ ସୁଦକ୍ଷ । ଦୁହିଁଙ୍କର ମିଳିତ ଚେଷ୍ଟାରେ କାରଖାନାର ଅପ୍ରତ୍ୟାଶିତ ଉନ୍ନତି ଘଟିଲା । ଶିଳ୍ପ ଜଗତରେ ମାନବପାଇଁ ଜନ୍ମ ନେଲା ଏକ ଅଭିନବ ଆଶୀର୍ବାଦ ।

ଆଜି ବିଶ୍ୱ ବିସ୍ତୃତ ମଟର ଶିଳ୍ପର ଜନକ ମେବେଚ ଓ ଡେମଲର । ଏହି ଦୁହିଁଙ୍କର ଅକ୍ଳାନ୍ତ ପରିଶ୍ରମ ହେତୁ ବେଗଗାମୀ ମଟର ଇଞ୍ଜିନ ନିର୍ମିତ ହେଲା । ଡେମଲରଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଦୁହେଁ ଏଥିନିମନ୍ତେ ଦୀର୍ଘ ଅଠର ବର୍ଷ କାଳ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ଡେମଲରଙ୍କର ପରୀକ୍ଷାଗାର ଥିଲା ଗୋଟିଏ କ୍ଷୁଦ୍ର ଘର । ଦୁହେଁ ସେଠାରେ ଅତି ଗୋପନରେ ପରୀକ୍ଷା ଚଳାନ୍ତି । ସେମାନଙ୍କର ଉଦ୍ଦେଶ୍ୟ କିପରି ସଫଳ ହେବ ତାହା ସେମାନେ ସେହି ଘର ଭିତରେ ବସି ଘଣ୍ଟା ଘଣ୍ଟା ଧରି ଚିନ୍ତା କରୁଥିଲେ । ସେମାନେ ରାତିରେ ଝାର୍କାସପ ଦ୍ୱାରରେ ପରଦା ପକାଇ ଭିତରେ ଗ୍ୟାସ ଲାଇଟ ଜାଳନ୍ତି । ସେତି-କିରେ ସନ୍ତୁଷ୍ଟ ନ ହୋଇ ସେମାନେ ଦ୍ୱାରରେ କୁକୁର ଜଗାଇ ଦେଇ ଥାଆନ୍ତି । କୁକୁର କାହାରିକୁ ଭିତରକୁ ଛାଡେ ନାହିଁ । ରାତି ଗଭୀର ହୁଏ । ତଥାପି ଦୁହିଁଙ୍କର କାମ ଶେଷ ହୁଏ ନାହିଁ । ତା ଭିତରେ ଦୁହେଁ ଯାହା କରନ୍ତି ତାହା ସମ୍ପୂର୍ଣ୍ଣ ଗୋପନ ରଖାଯାଏ ।

ଏପରିକି ସେ କଥା ତୃତୀୟ ବ୍ୟକ୍ତିର କାନକୁ ଯାଏ ନାହିଁ । କିନ୍ତୁ ବାହାର ଲୋକେ ସେମାନଙ୍କୁ ସନ୍ଦେହ କରନ୍ତି । ଶେଷରେ ପଡୋଶୀମାନେ ସନ୍ଦେହ କଲେ ଡେମଲାର ଓ ମେବେଚ ସେ ଘରେ ଜାଲ ମୁଦ୍ରା ତିଆରି କରୁଛନ୍ତି କିମ୍ବା ତା ଠାରୁ ଆହୁରି କିଛି ଅଧିକ ଖରାପ କାମ କରୁଛନ୍ତି । ପଡୋଶୀମାନଙ୍କର ସନ୍ଦେହ ବଢିଲା । ସେମାନଙ୍କର ଧୈର୍ଯ୍ୟ ଲୋପ ହେଲା । ଶେଷରେ ସେମାନେ ଏହା ପୋଲିସକୁ ଜଣାଇ ଦେବା ନିମନ୍ତେ ସ୍ଥିର କଲେ ।

ଶେଷରେ ପୋଲିସଙ୍କ କାନକୁ ଏ କଥା ଗଲା । ପୋଲିସ ମଧ୍ୟ ଏ ଦୁଇଜଣ କୌଣସି ଖରାପ କାର୍ଯ୍ୟରେ ଲିପ୍ତ ଥିବାର ସନ୍ଦେହ କଲେ । ସେମାନେ ଡେମଲାର ଓ ମେବେଚଙ୍କୁ ଧରିବା ପାଇଁ ଚେଷ୍ଟା କଲେ । ଡେମଲାରଙ୍କର ଉଦ୍ୟାନ ରକ୍ଷକକୁ ପୋଲିସ ବହୁ ପ୍ରଲୋଭନ ଦେଖାଇ ହାତ କଲେ । ସେ ପୋଲିସକୁ କାରଖାନା ସମ୍ବନ୍ଧରେ ସବୁ କଥା କହିଲା । ଉଦ୍ୟାନ ରକ୍ଷକକୁ ତ ହାତ କରାଗଲା, କୁକୁରଟିକୁ ହାତ କରାଯିବ କିପରି ? ସେ ତ ଡେମଲାରଙ୍କ ବ୍ୟତୀତ ଆଉ କାହାରି କଥା ଶୁଣିବ ନାହିଁ । ପୋଲିସ ଉଦ୍ୟାନ ରକ୍ଷକକୁ କହିଲେ—'କୁକୁରଟିକୁ ବାନ୍ଧିରଖ । ତୁମକୁ ଯଥେଷ୍ଟ ପୁରସ୍କାର ଦିଆଯିବ ।''

ଦିନେ ଡେମଲାର ଓ ମେବେଚ କଠିନ ପରିଶ୍ରମ କରି କ୍ଳାନ୍ତ ହୋଇ ପଡ଼ିଲେ । ସେମାନେ ଶୋଇପଡ଼ିଲେ । ଏହି ସୁଯୋଗରେ ପୋଲିସ ସତର୍କତା ସହିତ କାରଖାନା

ଭିତରେ ପ୍ରବେଶ କରି ବନ୍ଧୁ କଅଣ କରୁଛନ୍ତି ତାହା ଦେଖିବାକୁ ଗଲେ । ସେମାନେ ଦେଖିଲେ ପରୀକ୍ଷା ନିରୀକ୍ଷା ସମ୍ବନ୍ଧୀୟ ବହୁ ଯନ୍ତ୍ରପାତି କାରଖାନାରେ ରହିଛି । ପୋଲିସ ଅବଶ୍ୟ ସେ ଯନ୍ତ୍ରଗୁଡ଼ିକୁ ଚିହ୍ନି ପାରିଲେ ନାହିଁ । ତଥାପି ସେମାନଙ୍କର ଦୃଢ଼ ବିଶ୍ୱାସ ହେଲା ଡେମଲାର ଓ ମେବେଚ କୌଣସି ଖରାପ କାମରେ ଲିପ୍ତ ନାହାନ୍ତି । ସେମାନେ ନିଶ୍ଚୟ କୌଣସି ନୂତନ ଆବିଷ୍କାର ନିମନ୍ତେ ଚେଷ୍ଟା କରୁଛନ୍ତି । ପୋଲିସର ସନ୍ଦେହ ଦୂର ହୋଇଗଲା । ସେମାନେ ଫେରି ଆସିଲେ ।

ସକାଳୁ ଉଠି ଡେମଲାର ଦେଖିଲେ କାରଖାନାର ଦ୍ୱାର ଖୋଲା ଅଛି । ପଡୋଶୀମାନଙ୍କ ଉପରେ ତାଙ୍କର ସନ୍ଦେହ ହେଲା । କିନ୍ତୁ ସେ କଳହପ୍ରିୟ ନ ଥିଲେ । ଏଣୁ କାହାରିକୁ କିଛି ନ କହି ନୀରବ ରହିଲେ । ଇଂଜିନ ତିଆରିରେ ଦ୍ରୁତ ପ୍ରଗତି କରିବା ଥିଲା ଡେମଲାରଙ୍କର ଲକ୍ଷ୍ୟ । କିନ୍ତୁ ଏହା ପୂର୍ବରୁ ସେ ଓଟୋଙ୍କ ପ୍ରଣାଳୀକୁ ଗୁରୁତ୍ୱ ନ ଦେଇ ଇଗ୍ନିସନ ପ୍ରଣାଳୀକୁ ରୂପ ଦେବା ନିମନ୍ତେ ସ୍ଥିର କଲେ ।

ସେତେବେଳେ ଓଟୋଙ୍କର ପ୍ରଣାଳୀ ଥିଲା ସର୍ବାପେକ୍ଷା ଉତ୍କୃଷ୍ଟ । ସେଥିରେ ପେଟ୍ରୋଲ ବ୍ୟବହାରର ସୁନ୍ଦର ବ୍ୟବସ୍ଥା ଥିଲା । କିନ୍ତୁ ଏହାସତ୍ତ୍ୱେ ଇଂଜିନ ଦ୍ରୁତ ଗତିରେ ଚାଲୁ ନ ଥିଲା । କିଛି କାଳ ଚିନ୍ତାକରି ଅନ୍ୟ ଏକ ସୁବିଧାଜନକ ଟ୍ୟୁବ୍ ଇଗ୍ନିସନ ପ୍ରଣାଳୀ ବାହାର କଲେ । ଏହା ଫଳରେ ଇଂଜିନକୁ ଆପେ ପେଟ୍ରୋଲ ଯୋଗାଇବା କାମ ହୋଇ ପାରିବା ପାଇଁ ବ୍ୟବସ୍ଥା ହୋଇଗଲା । ଏହାଦ୍ୱାରା ଅନ୍ୟ ଏକ ସୁବିଧା ହେଲା । ଇଂଜିନ ଯେତେଦୂର ଗଲେ ମଧ୍ୟ କୌଣସି ଅସୁବିଧା ହେଲାନାହିଁ । ଓଟୋ ଯେଉଁ ପେଟ୍ରୋଲ ପାସ୍ କରିବା ପ୍ରଣାଳୀ କରିଥିଲେ ତାହା ଏତେ ସୁନ୍ଦର ଓ ତ୍ରୁଟିହୀନ ହୋଇ ନ ଥିଲା ।

ଏହାପରେ ଡେମଲାର ଗୋଟିଏ ପରେ ଗୋଟିଏ ଆବିଷ୍କାର କରିବାକୁ ଲାଗିଲେ । 'ଟ୍ୟୁବ ଇଗ୍ନିସନ' ପ୍ରଣାଳୀ ଡେମଲରଙ୍କର ଏକ ମହତ୍ତ୍ୱପୂର୍ଣ୍ଣ ଆବିଷ୍କାର । ମୋଟରକାର ଚଳାଚଳରେ ଏହା ସମ୍ପୂର୍ଣ୍ଣ ଓ ବାସ୍ତବ ଉପଯୋଗୀ । ଏହି ଆବିଷ୍କାର ଶିଳ୍ପ ଜଗତରେ ବିପ୍ଳବ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ମହତ୍ତ୍ୱପୂର୍ଣ୍ଣ ଉନ୍ନତି ସାଧନ କଲା । କେତେ ମାସ ପର୍ଯ୍ୟନ୍ତ ପରୀକ୍ଷା ନିରୀକ୍ଷା ଚାଲିଲା । ଏ ସମୟରେ ଡେମଲାର ଓ ମେବେଚ ଖାଇବା ପିଇବା ଭୁଲିଗଲେ । ଅକ୍ଳାନ୍ତ ପରିଶ୍ରମ ଓ ଏକାଗ୍ରତା ଫଳରେ ସାଫଲ୍ୟ ସେମାନଙ୍କର ଦ୍ୱାରକୁ ଆସିଲା । ଦୁହେଁ ଗୋଟିଏ ଏକ ସିଲିଣ୍ଡର ବିଶିଷ୍ଟ ବାୟୁପୂର୍ଣ୍ଣ ଇଂଜିନ ନିର୍ମାଣ କଲେ । ଏହି ଇଂଜିନରେ ଯେଉଁ ଚକ ସଂଯୁକ୍ତ ହେଲା ତାହା ମିନିଟରେ ୯୦୦ ଥର ଘୂରିଲା ।

ସେତେବେଳେ ଯେତେ ଇଂଜିନ ତିଆରି ହୋଇଥିଲା—ଏ ଇଂଜିନର ଗତିଥିଲା ସର୍ବାଧିକ । ତଥାପି ଡେମଲାରଙ୍କ ମନରେ ସନ୍ତୋଷ ଆସିଲା ନାହିଁ । ଇଂଜିନର ଗତି ଆହୁରି ବୃଦ୍ଧି କରିବାପାଇଁ ସେ ଚିନ୍ତାକଲେ । ଡେମଲାର ଗୋଟିଏ ନୂଆ ପ୍ରକାରର

ଅଧିକ ଗତିବିଶିଷ୍ଟ ଇଂଜିନ ନିର୍ମାଣ କରିବାପାଇଁ ଚେଷ୍ଟା କଲେ । ତାଙ୍କର ଏ ଚେଷ୍ଟା ସଫଳ ହେଲା । ଏ ଚେଷ୍ଟା ଫଳରେ ଯେଉଁ ଇଂଜିନ ନିର୍ମିତ ହେଲା ତାହା ମଧ୍ୟ ଡେମଲାରଙ୍କର ଏକ ମହତ୍ତ୍ୱପୂର୍ଣ୍ଣ ଆବିଷ୍କାର । ୧୮୮୩ ଖ୍ରୀଷ୍ଟାବ୍ଦରେ ଏହି ଇଂଜିନକୁ ପରୀକ୍ଷା କରଗଲା । ବାଣିଜ୍ୟ କାର୍ଯ୍ୟରେ ଲାଗିବା ପାଇଁ ଏ ଇଂଜିନ ପୂର୍ଣ୍ଣ ଉପଯୁକ୍ତ ଥିଲା ।

ଏ ଆବିଷ୍କାର ପରେ ଡେମଲାରଙ୍କର ଆନନ୍ଦର ସୀମା ରହିଲା ନାହିଁ । କାରଣ ସ୍ୱଦେଶ ନିର୍ମିତ ଇଂଜିନମାନଙ୍କ ମଧ୍ୟରେ ଏହା ପ୍ରଥମ ଦ୍ରୁତ ଗତିବିଶିଷ୍ଟ ଇଂଜିନ ।

ସର୍ବଦା କିଛି ନା କିଛି ଆବିଷ୍କାର କରିବାପାଇଁ ଡେମଲାର ବ୍ୟାକୁଳ ହୋଇ ଉଠିଲେ । ନିଜ ଆବିଷ୍କୃତ ଇଂଜିନ ସଂଯୋଗ କରି ସେ ମୋଟର ବାଇସାଇକେଲ ତିଆରି କରିବାପାଇଁ କଳ୍ପନା କଲେ । ମନରେ କୌଣସି ଆବିଷ୍କାର ସମ୍ବନ୍ଧରେ କଳ୍ପନା କଲାମାତ୍ରେ ଡେମଲାର ସଙ୍ଗେ ସଙ୍ଗେ କାମରେ ଲାଗି ପଡୁଥିଲେ । ମାସ ପରେ ମାସ ସେ ଅକ୍ଲାନ୍ତ ପରିଶ୍ରମ କରି ଚାଲିଲେ । ବିଭିନ୍ନ ପ୍ରକାର ପରୀକ୍ଷା ନିରୀକ୍ଷା ଚାଲିଥାଏ ।

ଡେମଲାର ପ୍ରଥମେ ଗୋଟିଏ କାଠ ନିର୍ମିତ ଇଞ୍ଜିନ ତିଆରି କଲେ । ସେଥିରେ କାଠର ଚକ ମଧ୍ୟ ଯୋଡାଗଲା । ଇଂଜିନ ଚାଳକଙ୍କର ସ୍ଥିତି ଠିକ୍ ରଖିବା ପାଇଁ ସେଥିରେ ଦୁଇଟି ଛୋଟ କାଠ ନିର୍ମିତ ବେଡ ଚକ ସଂଯୁକ୍ତ ହେଲା । କିନ୍ତୁ ସମସ୍ୟା ହେଲା ଇଞ୍ଜିନଟି ବଡ ଅସୁନ୍ଦର ଦେଖାଯାଉଥାଏ । ଆଜିକାଲିର ମଟର ସାଇକେଲକୁ ତା ସହିତ ତୁଳନା କଲେ ନ ହସି ରହିହେବ ନାହିଁ ।

କାମ ଶେଷ ହେଲା । ଡେମଲାରଙ୍କ ମନରେ ତିଳେହେଲେ ଦୁଃଖ କିମ୍ବା ନୈରାଶ୍ୟ ନ ଥାଏ । ୧୮୮୫ ମସିହା ନଭେମ୍ବର ମାସ ଦଶ ତାରିଖ । ଡେମଲାର ଇଞ୍ଜିନଟିକୁ ପରୀକ୍ଷା କଲେ । ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ଇଞ୍ଜିନଟି ଠିକ୍ କାମ କଲା । ଏହା ଡେମଲାରଙ୍କର ଏକ ମହତ୍ତ୍ୱପୂର୍ଣ୍ଣ ସଫଳତା । ସେତେବେଳର ଯନ୍ତ୍ର ଜଗତରେ ଏହା ଏକ ନୂତନ ଓ ମହତ୍ତ୍ୱପୂର୍ଣ୍ଣ ଆବିଷ୍କାର ।

ଏହାପରେ ଏ ଇଞ୍ଜିନ ସମ୍ବନ୍ଧରେ ବହୁ କଥା ସମ୍ବାଦପତ୍ରରେ ପ୍ରକାଶ ପାଇଲା । ଏହାର ଗତିବିଧି ସମ୍ବନ୍ଧରେ ଗୋଟିଏ ସମ୍ବାଦପତ୍ର ମତାମତ ଦେଇଥିଲେ—"ଇଞ୍ଜିନଟି ଚାଳକଙ୍କର ଦୁଇ ଗୋଡ ମଧ୍ୟରେ ସାଇକେଲ ଦେହରେ ସଂଯୁକ୍ତ । ଏହାର ଶକ୍ତି ଦେଢଟି ଘୋଟକର ଶକ୍ତି ସହିତ ସମାନ । ଇଞ୍ଜିନ ଚାଲିବା ପାଇଁ ପେଟ୍ରୋଲ ଆପେ ଆପେ ବ୍ୟବହୃତ ହୋଇ ପାରୁଥିଲା । କେବଳ କିଛି ତୈଳ ଅଂଶ ଟେପ୍ ଭିତରେ ପକାଇବା ଥିଲା ଚାଳକଙ୍କର କାମ । ଏ ଇଞ୍ଜିନ ଚଳାଇବା ବଡ ସହଜ । ଇଞ୍ଜିନ ଚଳାଇବା ପାଇଁ ଆବଶ୍ୟକୀୟ କାର୍ଯ୍ୟ ଏକ ମିନିଟ ମଧ୍ୟରେ ଶେଷ ହୋଇ ପାରୁଥିଲା । ଏଥିରେ ଏପରି ବ୍ୟବସ୍ଥା ଥିଲା ଆବଶ୍ୟକ ହେଲେ ଇଞ୍ଜିନ ଚାଲିଲେ ମଧ୍ୟ ମେସିନ ସ୍ଥିର ରହି

ପାରୁଥିଲା । ମେସିନ ଚଳାଇବା ନିମଂତେ ଅନ୍ୟ ଏକ ବ୍ୟବସ୍ଥା କରଯାଇଥିଲା । ମେସିନ ଚଳାଇବା ଆବଶ୍ୟକ ହେଲେ ସେତେବେଳେ ପ୍ୟାଡଲ ଉପରେ ଚାପ ଦେଲେ ଇଞ୍ଜିନ ସହିତ ଚକଗୁଡ଼ିକ ସଂଯୁକ୍ତ ହେଉଥିଲା । ଏହା ଫଳରେ ମେସିନ ଗତିଶୀଳ ହୋଇ ଉଠୁଥିଲା ।

ଇଞ୍ଜିନ ଓ ମେସିନରେ ଆବଶ୍ୟକୀୟ କାର୍ଯ୍ୟ କରିବା ପାଇଁ ଦଣ୍ଡ, ବୋଲ୍ଟ ଓ ଅନ୍ୟାନ୍ୟ ନାନା ପ୍ରକାର ଯନ୍ତ୍ରପାତି ଖଞ୍ଜା ଯାଇଥାଏ । ଏଗୁଡ଼ିକ ଇଞ୍ଜିନର ଗତି ବୃଦ୍ଧିରେ ସାହାଯ୍ୟ କରନ୍ତି ।

ଏ ତ ଗଲା ଇଞ୍ଜିନ ଓ ମେସିନ ଚାଲିବା କଥା । ଇଞ୍ଜିନକୁ ବନ୍ଦକରିବା ପାଇଁ କର୍ତ୍ତିଟିଏ ଖଞ୍ଜା ଯାଇଥାଏ । ଗତି ପ୍ରତିରୋଧ କରିବା ପାଇଁ ଖଞ୍ଜା ଯାଇଥିବା ଦଣ୍ଡଟିକୁ ପଛକୁ ଟାଣିଦେଲେ, ଚଳାଇବାରେ ସାହାଯ୍ୟ କରୁଥିବା ବୋଲ୍ଟଟି ଢିଲା ହୋଇଯାଏ । ଏହା ଫଳରେ ମେସିନ ବନ୍ଦ ହୋଇଯାଏ । ଏହି କୁରୂପ ଦର୍ଶନ ମେସିନଟି ପୃଥିବୀର ସର୍ବପ୍ରଥମ ମଟର ସାଇକେଲ । ପ୍ରଥମେ ଲୋକଙ୍କର ଏହା ଉପରେ ବିଶ୍ୱାସ ହେଲାନାହିଁ । ଏହାକୁ ଚଳାଇବା ଦ୍ୱାରା ସେମାନେ ବିପଦର ଆଶଙ୍କା କଲେ । ଭାବିଲେ ଏହାକୁ ଚଳାଇବା ଦ୍ୱାରା ଦୁର୍ଘଟଣା ଘଟିବାର ସମ୍ଭାବନା ଅଧିକ । ସେହି ଦୁର୍ଘଟଣା ଦ୍ୱାରା ପ୍ରାଣ ହାନିର ଆଶଙ୍କା ରହିଛି ।

କେତେଜଣ ସାହସୀ ଲୋକ ଏହି ଆଦିମ ମୋଟର ସାଇକେଲକୁ ଚଳାଇବା ଫଳରେ ଅନ୍ୟମାନଙ୍କର ଭୟ ଭାଙ୍ଗିଗଲା । ମୋଟର ସାଇକେଲ ପ୍ରତି ଦିନକୁ ଦିନ ଲୋକଙ୍କର ଆଗ୍ରହ ବୃଦ୍ଧି ପାଇଲା । ଆବିଷ୍କାର ପରେ ଆବିଷ୍କାର ଡେମଲାରଙ୍କର ଗୌରବ ବୃଦ୍ଧି କଲା । କିନ୍ତୁ ଡେମଲାରଙ୍କର ଆବିଷ୍କାର କ୍ଷୁଧା ଶାନ୍ତ ହେଲାନାହିଁ । ଏତେବେତ ଯନ୍ତ୍ର ଆବିଷ୍କାର କରିମଧ୍ୟ ତାଙ୍କର ମନରେ ତୃପ୍ତି ଆସିଲା ନାହିଁ ।

ଡେମଲାର ପୁଣି କୌଣସି ନୂତନ ଯନ୍ତ୍ର ଆବିଷ୍କାର କରିବାପାଇଁ ଚିଂତା କରିବାକୁ ଲାଗିଲେ । ଚିଂତା କରିବା ସଙ୍ଗେ ସଙ୍ଗେ ଚେଷ୍ଟା ମଧ୍ୟ ଆରମ୍ଭ ହେଲା । ସେ ଭାବିଲେ, ତାଙ୍କଦ୍ୱାରା ଆବିଷ୍କୃତ ଯନ୍ତ୍ର ସ୍ଥଳ ପଥରେ ଚାଲୁଛି । ତାହା ଜଳ ପଥରେ ନ ଚାଲିବ କାହିଁକି ? କିଛିଦିନ ଚିଂତା କଲାପରେ ସେ ତାଙ୍କର ଚିଂତାଧାରକୁ ରୂପ ଦେଲେ । ସେ ବହୁ ଚେଷ୍ଟା କରି ମଟର ବୋଟ ନିର୍ମାଣ କଲେ ।

ମେବେଚ ଏ ସବୁ କାର୍ଯ୍ୟରେ ଡେମଲାରଙ୍କର ପ୍ରଧାନ ସହାୟକ ଥିଲେ । ଦୁହେଁ ପ୍ରଥମେ ଗୋଟିଏ ୨୦ ଫୁଟ ଲମ୍ବ ଡଙ୍ଗା ତିଆରି କଲେ । ଏ ଡଙ୍ଗାରେ ଗୋଟିଏ ଇଞ୍ଜିନ ଖଞ୍ଜାଗଲା । ଇଞ୍ଜିନର ଗତି ପ୍ରତି ଘଣ୍ଟାରେ ଛଅ ମାଇଲ । ଏହି ଶକ୍ତି ଗୋଟିଏ ଘୋଡାର ଶକ୍ତି ସହିତ ସମାନ । ମଟର ବୋଟ ନିର୍ମାଣ କାର୍ଯ୍ୟ ଶେଷହେଲା । 'ନେକେର' ନଦୀରେ

ଏହି ବୋଟଟିକୁ ପ୍ରଥମେ ଚଳାଇ ପରୀକ୍ଷା କରଗଲା । ବୋଟ ଚାଲିଲା । ଏହି ସାଫଲ୍ୟ ଦୁଇ ବନ୍ଧୁଙ୍କ ମନରେ ନୂତନ ଉତ୍ସାହ ଭରିଦେଲା ।

ଡେମଲାର, ବନ୍ଧୁ ମେବେଚଙ୍କୁ କହିଲେ—"କିଛିଦିନ ଏଇ ବୋଟରେ ବିନା ମୂଲ୍ୟରେ ଲୋକଙ୍କୁ ଭ୍ରମଣ କରିବାର ସୁଯୋଗ ଦେବା ।"

ମେବେଚ କହିଲେ—"ମୁଁ ତୁମ କଥାରେ ସମ୍ମତ । କିନ୍ତୁ ଏଥିରେ ଯାତାୟାତ କରିବା ନିରାପଦ । ଏହା ଯେ ପର୍ଯ୍ୟନ୍ତ ଲୋକେ ଅନୁଭବ ନ କରିଛନ୍ତି ସେ ପର୍ଯ୍ୟନ୍ତ ସେମାନେ ଏଥିରେ ଯାତାୟାତ କରିବା ପାଇଁ ସମ୍ମତ ହେବେ ନାହିଁ । ଏ ଡଙ୍ଗା ପେଟ୍ରୋଲ ଇଞ୍ଜିନ ଦ୍ୱାରା ଚାଳିତ । ଲୋକେ ଭାବିବେ ନଈ ମଝିରେ ଯଦି କୌଣସି କାରଣରୁ ଇଞ୍ଜିନଟି ବନ୍ଦ ହୋଇଯାଏ ତାହେଲେ ସେମାନେ ବୁଡ଼ି ମରିବେ ।"

ଡେମଲାର ବୁଝିପାରିଲେ ମେବେଚଙ୍କର କଥା ଅର୍ଥହୀନ ନୁହେଁ । ପ୍ରାଣ ଭୟରେ ଲୋକେ ନିଶ୍ଚୟ ପେଟ୍ରୋଲ ଚାଳିତ ଡଙ୍ଗାରେ ବସିବା ପାଇଁ ରାଜି ହେବେନାହିଁ । ଲୋକଙ୍କର ଭୟ ଦୂର କରିବା ପାଇଁ ଡେମଲାର ଗୋଟିଏ ଉପାୟ ବାହାର କଲେ । ଲୋକଙ୍କୁ ଡଙ୍ଗାରେ ବସିବା ପାଇଁ କହିବା ପୂର୍ବରୁ ସେ ଡଙ୍ଗା ଉପରେ ବହୁ ପ୍ରକାର ତାର ଓ ପୋରସିଂ ଲାଇନ ଖଞ୍ଜି ଲୋକଙ୍କୁ କହିଲେ, ଡଙ୍ଗାଟି ବିଦ୍ୟୁତ ଶକ୍ତି ଦ୍ୱାରା ଚାଳିତ । ଏଣୁ ବିପଦର ଆଶଙ୍କା ନାହିଁ । କିନ୍ତୁ ପ୍ରକୃତରେ ଲୋକଙ୍କର ଭୟ ଦୂର କରିବା ପାଇଁ ଏହାଥିଲା ପ୍ରତାରଣା ।

ଡେମଲାରଙ୍କର ଚିନ୍ତାଧାରା ଓ କଳ୍ପନା ସୁସ୍ଥ ଏବଂ ତ୍ରୁଟିହୀନ ଥିଲା । ତାଙ୍କର ଏହି ପ୍ରତାରଣା ଫଳପ୍ରଦ ହେଲା । ଲୋକେ ବହୁ ସଂଖ୍ୟାରେ ଏ ବୋଟରେ ଭ୍ରମଣ କରିବାକୁ ଲାଗିଲେ । ଏ ମୋଟର ବୋଟ ମୋଟର ସାଇକେଲ ଠାରୁ ଅଧିକ ଜନପ୍ରିୟ ହୋଇ ଉଠିଲା । ଏହି ନୂତନ ଆବିଷ୍କାର ଡେମଲାରଙ୍କ ପାଇଁ ନୂତନ ଖ୍ୟାତି ଆଣିଲା ।

ଡେମଲାରଙ୍କର ଏହି ଆବିଷ୍କାର କଥା ବହୁ ଦେଶର ଲୋକେ ଜାଣିପାରିଲେ । ପାରସ୍ୟର ଶାହା ଓ ଜର୍ମାନୀର ଚାନ୍ସେଲର ପ୍ରିନ୍ସ ବିସ୍‌ମାର୍କ ସେହିପରି ଆଉ କେତୋଟି ମୋଟର ବୋଟ ନିର୍ମାଣ କରିବା ପାଇଁ ଡେମଲାରଙ୍କୁ ଅନୁରୋଧ କଲେ ।

ମୋଟର ବୋଟ ପ୍ରତି ଲୋକଙ୍କର ଆଗ୍ରହ ବଢ଼ିବା ସଙ୍ଗେ ସଙ୍ଗେ ଇଞ୍ଜିନ ଚାଳିତ ବୋଟର ଚାହିଦା ମଧ୍ୟ ବଢ଼ିଲା । ସେତେବେଳେ କର୍ଗୋଭେସଲ ଠାରୁ ଓୟାର ହାଉସକୁ ହେମବର୍ଗ ବନ୍ଦର ଉପରେ ଜିନିଷ ନେବା ଆଣିବା କରିବାର ଆବଶ୍ୟକତା ପୂରଣ ହୋଇପାରୁ ନ ଥିଲା । ଏହି ଆବଶ୍ୟକତା ପୂରଣ ନିମନ୍ତେ ଅଧିକ ଶକ୍ତିଶାଳୀ ଇଞ୍ଜିନ ସଂଯୁକ୍ତ ବଡ ବଡ ଡଙ୍ଗା ତିଆରି କରିବାପାଇଁ ଡେମଲାରଙ୍କୁ ଅନୁରୋଧ କରାଗଲା । ଆବିଷ୍କାରର ସଂଖ୍ୟା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଡେମଲାରଙ୍କର ବୟସ ମଧ୍ୟ ବଢ଼

ଚଳିଥାଏ । ଏହି ଆବିଷ୍କାର ସମୟରେ ଡେମଲାର ୪୨ ବର୍ଷ ବୟସରେ ପଦାର୍ପଣ କଲେ ।

ଏହାର ଚାରିବର୍ଷ ପୂର୍ବରୁ ଡେମଲାର ଓଟୋଙ୍କ ସହିତ କଳହ କରି ନିଜର କାରଖାନା ଖୋଲିଥିଲେ । ଏହି କାରଖାନା ଦ୍ରୁତ ଉନ୍ନତି ମଧ୍ୟ ସେ ଉପଲବ୍ଧି କଲେ । ଧନ, ଖ୍ୟାତି ଓ ଶ୍ରଦ୍ଧା ସମ୍ମାନ ଏବେ ତାଙ୍କ ଭଣ୍ଡାରରେ ପରିପୂର୍ଣ୍ଣ ଥିଲା ।

୧୮୮୫ ଖ୍ରୀଷ୍ଟାବ୍ଦରେ ଡେମଲାର ପୃଥିବୀର ସର୍ବପ୍ରଥମ ମଟର ସାଇକେଲ ଆବିଷ୍କାର କଲେ । ଠିକ୍ ସେହିବର୍ଷ ଜର୍ମାନ ଇଞ୍ଜିନିୟର କାର୍ଲ ବେଞ୍ଜ ପୃଥିବୀର ସର୍ବ ପ୍ରଥମ ମଟରକାର୍ ଆବିଷ୍କାର କଲେ । ବେଞ୍ଜଙ୍କର କାର୍ ଇଞ୍ଜିନର ଶକ୍ତି ଏକ ଅଶ୍ୱ ଶକ୍ତି ସହିତ ସମାନ । ଏହା ତିନିଚକିଆ ମୋଟର କାର୍ । ଆଗରେ ଗୋଟିଏ ଓ ପଛରେ ଦୁଇଟି ଚକ ଥିଲା । ଏଥିରେ ଦୁଇଜଣ ବସି ପାରୁଥିଲେ । ଗୋଟିଏ ଘୋଡାଗାଡ଼ି ଓ ସାଇକେଲକୁ ମିଶାଇଦେଲେ ଯେପରି ଦେଖାଯିବ ଏ କାର୍‌ଟି ଠିକ୍ ସେହିପରି ଦେଖା-ଯାଉଥିଲା ।

ଡେମଲାର ପଛକୁ ଚାହୁଁ ନ ଥିଲେ । ତାଙ୍କର ପାଦ ସର୍ବଦା ଆଗକୁ ପଡୁଥିଲା । ପୁଣି କେତେକ ଆବିଷ୍କାର କରି ସେ ଅଳ୍ପଦିନ ମଧ୍ୟରେ ବେଞ୍ଜଙ୍କୁ ବଳିଗଲେ । ବେଞ୍ଜ ସର୍ବପ୍ରଥମ କାର୍ ତିଆରି କଲେ ସତ, କିନ୍ତୁ ପ୍ରକୃତରେ ଡେମଲାର ମଟର କାର୍‌ର ଜନକ । ଡେମଲାର ଓ ବେଞ୍ଜ ଦୁହେଁ ଇଞ୍ଜିନିୟର । କିନ୍ତୁ ସେମାନଙ୍କର ଦୂର ଦୃଷ୍ଟି ଓ ଚରିତ୍ର ସମାନ ନ ଥିଲା ।

ଡେମଲାରଙ୍କ ଭଳି ବେଞ୍ଜ ପ୍ରଗତିପ୍ରୟାସୀ ନୁହନ୍ତି । ଗୋଟିଏ କିଛି ଆବିଷ୍କାର କରିବାପରେ ସେ ସମ୍ପୂର୍ଣ୍ଣ ତୃପ୍ତି ଲାଭ କରୁଥିଲେ । ତାଙ୍କ ଆବିଷ୍କୃତ ମୋଟର କାର୍ ପୂର୍ଣ୍ଣାଙ୍ଗ ଲାଭ କରି ନ ଥିଲା । ତଥାପି ସେ ନିଜର ଆବିଷ୍କାର ପାଇଁ ଅସୀମ ଆନନ୍ଦ ଅନୁଭବ କରୁଥିଲେ । କିପରି ମୋଟର କାରଟି ପୂର୍ଣ୍ଣାଙ୍ଗ ଲାଭ କରିବ । ସେ ବିଷୟରେ ସେ ଚିନ୍ତା କଲେ ନାହିଁ । ବେଞ୍ଜ ଥିଲେ ଅହଂକାରୀ । ସେ ନିଜର ଜ୍ଞାନକୁ ସର୍ବଶ୍ରେଷ୍ଠ ମନେ କରୁଥିଲେ । ଏଣୁ କେହି କୌଣସି ଉନ୍ନତିର ଯୋଜନା ଦେଲେ ସେ ଆଦୌ ଗ୍ରହଣ କରୁ ନ ଥିଲେ ।

ଡେମଲାର ଥିଲେ ଉଦାରପନ୍ଥୀ ମାନବ । ନୂତନ ଜ୍ଞାନ ଅର୍ଜନ କରିବା ପାଇଁ ସେ ସର୍ବଦା ବ୍ୟାକୁଳ ହୋଇ ଉଠୁଥିଲେ । କୌଣସି କାର୍ଯ୍ୟ ଶେଷକରି କିମ୍ବା ଆବିଷ୍କାର କଲା ପରେ ସେହି କାମ ଶେଷ ହୋଇଗଲା ବୋଲି ଡେମଲାର ଭାବୁ ନ ଥିଲେ । ସେ ସର୍ବଦା ଭାବୁଥିଲେ କାମ ସମ୍ପୂର୍ଣ୍ଣ ହୋଇନାହିଁ । ନିଶ୍ଚୟ କିଛି ବାକୀ ରହିଯାଇଛି ! ସେଇଟି ତ୍ରୁଟିହୀନ ନ ହେବା ପର୍ଯ୍ୟନ୍ତ ସେ ବହୁ ଶ୍ରମ ଓ ଅର୍ଥବ୍ୟୟ କରି ସେହି ତ୍ରୁଟି ଦୂର କରିବାରେ ଲାଗି ପଡୁଥିଲେ । ଅଭାବ ଓ ସମୟ କେବେହେଲେ ତାଙ୍କର ପ୍ରଗତିରେ

ପ୍ରତିବନ୍ଧକ ସୃଷ୍ଟି କରି ପାରିନାହିଁ । ଡେମଲାର କେବେହେଲେ ଘଡ଼ୁ ନ ଥିଲେ ଗୋଟିଏ ଥର ଚେଷ୍ଟାରେ ଗୋଟିଏ କାମ ଶେଷ ହୋଇଯିବ । ଯେ କୌଣସି କାମକୁ ଧୈର୍ଯ୍ୟର ସହିତ ଗୋଟିକ ପରେ ଗୋଟିଏ ତ୍ରୁଟିହୀନ ଭାବରେ ପୂର୍ଣ୍ଣ କରିବା ତାଙ୍କର ଚରିତ୍ରର ବିଶେଷତ୍ୱ ଥିଲା ।

ଡେମଲାର ପ୍ରଥମେ ମଟର କାର୍ ତିଆରି କରିବା ପାଇଁ ଚିନ୍ତା କଲେ । ଚିନ୍ତା କରିବା ପରେ ପରେ ସେ ମଟର କାର ତିଆରିରେ ଲାଗିପଡ଼ିଲେ । କିନ୍ତୁ ସେହି ସମୟରେ ବେଞ୍ଜ ମଟର କାର୍ ତିଆରି କରୁଥିଲେ, ଡେମଲାର ତାହା ଜାଣି ନ ଥିଲେ । ଏଣୁ ବେଞ୍ଜଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବା ତାଙ୍କର ଉଦ୍ଦେଶ୍ୟ ନ ଥିଲା ।

ଡେମଲାର ବଡ ରହସ୍ୟମୟ ବ୍ୟକ୍ତି ଥିଲେ । ମଟରକାର୍ ତିଆରି କରିବା ଉଦ୍ଦେଶ୍ୟରେ ସେ ପ୍ରଥମେ କନଷ୍ଟବଲଙ୍କୁ ଗୋଟିଏ ପୁରୁଣା ଘୋଡାଗାଡ଼ି କିଣି ଆଣିଲେ । ସେଥିରେ ନିଜର ଉନ୍ନତ ଧରଣର ଯନ୍ତ୍ରପାତି ଗୋଟିକପରେ ଗୋଟିଏ ଖଞ୍ଜିବାକୁ ଲାଗିଲେ । ସମସ୍ତ ଯନ୍ତ୍ରପାତି ଖଞ୍ଜା ସରିଲା । ଗାଡ଼ିଟି ମଧ୍ୟ ଭଲ ଅବସ୍ଥାକୁ ଆସିଲା । ସେଥିରେ ସେ ଏକ ଅଶ୍ୱଶକ୍ତିବିଶିଷ୍ଟ ଇଞ୍ଜିନ୍‌ଟିଏ ଖଞ୍ଜିଲେ । ସେ ଯେଉଁ ଇଞ୍ଜିନ୍ ମଟର ସାଇକେଲରେ ଖଞ୍ଜିଥିଲେ ଏ ଇଞ୍ଜିନ୍‌ଟି ତା ସହିତ ସମାନ ଥିଲା ।

ସେତେବେଳକୁ ବେଞ୍ଜ ମଟର ଗାଡ଼ି ଆବିଷ୍କାର କରି ସାରିଥାଆନ୍ତି । ଏ ଆବିଷ୍କାରର ଆଠ ମାସ ପରେ ଡେମଲାର ଓ ମେବେଚ ସେମାନଙ୍କ ନିର୍ମିତ ମଟର କାରକୁ ପରୀକ୍ଷା କଲେ । ଦିନରେ ସେମାନେ ପରୀକ୍ଷା କାର୍ଯ୍ୟ ନ ଚଳାଇ ରାତିରେ ଚଳାଇଲେ । ଏହାର ଏକ ବିଶେଷ କାରଣ ଥିଲା; ଦିନରେ ଚଳାଇଲେ ଯଦି ତାଙ୍କ ନିର୍ମିତ ଘରିଚଳିଆ ମୋଟର କାରଟି ଠିକ୍ ନ ଚାଲେ ତାହାହେଲେ ଲୋକେ ଥଟ୍ଟା କରିବେ ଓ ଗାଡ଼ିର ଚାହିଦା କମିଯିବ । ଏଣୁ ସେ ଲୋକଙ୍କର ଅଗୋଚରରେ ରାତିରେ ପରୀକ୍ଷା କରୁଥିଲେ ।

ଡେମଲାର ଯାହା ଆଶା କରୁଥିଲେ ଗାଡ଼ିଟି ତା ଅପେକ୍ଷା ଅଧିକ କାମ କଲା । ଏ ଗାଡ଼ି ପ୍ରତି ଘଣ୍ଟାରେ ବାର ମାଇଲ ଗତିରେ ଚାଲିଲା । ଅବଶ୍ୟ ଆଧୁନିକ ଯୁଗରେ ଏ ଗତିର କୌଣସି ମୂଲ୍ୟ ନାହିଁ । କିନ୍ତୁ ଏ ଗତି ତତ୍‌କାଳୀନ ଯାନ ବାହନର ଗତିଠାରୁ ନ୍ୟୂନ ନ ଥିଲା । ଅବଶ୍ୟ ଆଜିକାଲିର ଯାନଭଳି ଡେମଲାରଙ୍କର ଏ ଗାଡ଼ିରେ ବସିବା ଆରାମପ୍ରଦ ନ ଥିଲା । କାରଣ ଚକଗୁଡ଼ିକର ଅବସ୍ଥା ଭଲ ନ ଥିଲା ।

ଡେମଲାର ଜାଣିଥିଲେ ମଞ୍ଜି ଫୁଟି ଗଛ ହେବାପରେ ସେହି ଗଛ ଫଳଫୁଲରେ ପୂର୍ଣ୍ଣହେବ । ଏଣୁ ସେ ଏ ପ୍ରକାର ପ୍ରାଥମିକ ଅସୁବିଧାକୁ ଖାତର କରୁ ନ ଥିଲେ । ସେ ଜାଣିଥିଲେ କୌଣସି ଜିନିସ ଆରମ୍ଭ ହେବା ସମୟରେ ଏ ପ୍ରକାର ଅସୁବିଧା ହେବା ସ୍ୱାଭାବିକ । ଜର୍ମାନୀର ସମ୍ବାଦପତ୍ରଗୁଡ଼ିକ ଦ୍ୱାରା ଡେମଲାରଙ୍କର ଏ କାର୍ଯ୍ୟ ସବୁ ଉଚ୍ଚ ପ୍ରଶଂସିତ ହେଲା ।

ପାଣି ଉପରେ ଚାଲିବା ଭଳି ଉନ୍ନତ ଧରଣ ମୋଟର ଲଞ୍ଚ ନିର୍ମାଣରେ ଡେମ- ଲାର ଓ ମେବେଚ ଲାଗିପଡ଼ିଲେ । ଡେମଲାର ଜୀବନରେ ବିଫଳତା କେବେହେଲେ ଦେଖି ନ ଥିଲେ । ସେ ଏହି କାର୍ଯ୍ୟରେ ସଫଳ ହେଲେ । କିନ୍ତୁ ତାଙ୍କର ସନ୍ତୋଷ ଆସିଲା ନାହିଁ । ସେ ଗୋଟିଏ ଦୁଇ ସିଲିଣ୍ଡରଯୁକ୍ତ ଇଞ୍ଜିନ୍ ନିର୍ମାଣ କରିବା ପାଇଁ ଚେଷ୍ଟା କଲେ । ସେତେବେଳେ ଦୁଇ ସିଲିଣ୍ଡରଯୁକ୍ତ ଇଞ୍ଜିନ୍ ନିର୍ମିତ ହୋଇ ନ ଥିଲା । ଏଣୁ ସେତେବେଳର ଶିଳ୍ପ ଜଗତରେ ଡେମଲାରଙ୍କର ଏହି ଚେଷ୍ଟା ସମ୍ପୂର୍ଣ୍ଣ ନୂତନ । ଡେମଲାରଙ୍କର ଶ୍ରମ ଓ ସମୟ ମଟରକାର ତିଆରି କରିବାରେ ସୀମିତ ନ ଥିଲା ।

ଡେମଲାର ନୂଆ ନୂଆ ଜିନିସ ତିଆରି କରିବା ପାଇଁ ପ୍ରତ୍ୟେକ ଘଡ଼ିରେ ସ୍ୱପ୍ନ ଦେଖୁଥାଆନ୍ତି । ସେ ଟ୍ରାମ୍‌କାର, ବସ୍ ଓ ନିଆଁ ଇଞ୍ଜିନ ଆବିଷ୍କାର କରି ଏ କ୍ଷେତ୍ରରେ ମଧ୍ୟ ଅଗ୍ରଣୀ ହେଲେ ।

ସେତେବେଳେ ମଣିଷ ଆକାଶରେ ଉଡ଼ିବା କଥା ଚିନ୍ତା କରୁଥିଲା । ଆକାଶରେ ଉଡ଼ିବା ପାଇଁ ଡେମଲାର କୌଣସି ଯନ୍ତ୍ର ଆବିଷ୍କାର କରି ନ ଥିଲେ । ଜେପେଲିନର ଆବିଷ୍କାରକ କାଉଣ୍ଟ ଜେପଲିନ, ଆକାଶରେ ଉଡ଼ିବା ଯନ୍ତ୍ର ନିର୍ମାଣ କରିବା ପାଇଁ ଡେମଲାରଙ୍କୁ ପରାମର୍ଶ ଦେଲେ । କିନ୍ତୁ ଡେମଲାର ଏଥିରେ ସମ୍ମତ ନ ହୋଇ କହିଲେ—"ମୁଁ ଘୋଡାଟଣା ଗାଡ଼ି ପରିବର୍ତ୍ତେ ମଟରକାର ପ୍ରଭୃତି ଆବିଷ୍କାର କଲି । ତଥାପି ଲୋକଙ୍କ ଦୃଷ୍ଟିରେ ମୁଁ ନିର୍ବୋଧ । ସେମାନେ ଯଦି ଜାଣନ୍ତି ମୁଁ ଆକାଶରେ ଉଡ଼ିବାର କଳ୍ପନା କରୁଛି, ତାହାହେଲେ ସେମାନେ ମୋତେ ପାଗଳ ବ୍ୟତୀତ ଆଉ କିଛି କହିବେ ନାହିଁ ।"

ଏହାପରେ ଡେମଲାର ଆକାଶରେ ଉଡ଼ିବା ଯାନ ନିର୍ମାଣ ଦିଗରେ ମନଯୋଗୀ ହେଲେ ନାହିଁ । କିନ୍ତୁ ବେଲୁନରେ ବ୍ୟବହୃତ ହେଉଥିବା ଇଞ୍ଜିନ ପ୍ରଭୃତି ସେ ଆବିଷ୍କାର କରିଥିଲେ । ୧୮୮୯ ଖ୍ରୀଷ୍ଟାବ୍ଦ, ପ୍ୟାରିସରେ ଫରାସୀ ବିପ୍ଳବର ଶତବାର୍ଷିକୀ ପାଳିତ ହେଉଥାଏ । ବିଭିନ୍ନ ଉତ୍ସବ ମଧ୍ୟରେ ଏକ ବିରାଟ ପ୍ରଦର୍ଶନୀର ଆୟୋଜନ କରାଗଲା । ଡେମଲାରଙ୍କର ତୃତୀୟ ମଟର କାର୍ ନିର୍ମିତ ହୋଇ ସାରିଥାଏ । ସେ ନିଜର ଚତୁର୍ଥ ମଟରକାର୍ ନିର୍ମାଣରେ ବ୍ୟସ୍ତ ଥାଆନ୍ତି । ନିଜ ଆବିଷ୍କୃତ ଜିନିସଗୁଡ଼ିକ ସାଙ୍ଗରେ ଧରି ଡେମଲାର ପ୍ୟାରିସ ଗଲେ । ପ୍ରଦର୍ଶନୀରେ ସେ ସବୁ ଜିନିସ ପ୍ରଦର୍ଶିତ ହେଲା । ପୃଥିବୀର ବିଭିନ୍ନ ଦେଶର ଲୋକେ ସେ ସବୁ ଜିନିସ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେ ସବୁ ଜିନିସର ଚାହିଦା ଏପରି ବୃଦ୍ଧି ପାଇଲା ଯେ ଡେମଲାର ବାଧ୍ୟହୋଇ ନିଜର ବ୍ୟବସାୟ ବୃଦ୍ଧି କଲେ ।

୧୮୮୯ ଖ୍ରୀଷ୍ଟାବ୍ଦରେ ଡେମଲାରଙ୍କର ଜୀବନର ଖ୍ୟାତି ଓ ସମସ୍ୟାର ସଙ୍ଗମ ବର୍ଷ । ସେ ବର୍ଷ ସମସ୍ତ ବିଶ୍ୱ ଡେମଲାରଙ୍କର ପ୍ରଶଂସାଗାନରେ ମୁଖରିତ ହୋଇ ଉଠିଲା । କିନ୍ତୁ

ସେହି ବର୍ଷ ତାଙ୍କର ଜୀବନ ବହୁ ଦୁଃଖଦ୍ୱାର ବିକ୍ଷୁବ୍ଧ ହୋଇ ଉଠିଲା । ସେହିବର୍ଷ ଡେମଲାରଙ୍କର ବିବାହିତା ଜୀବନର ୨୨ ବର୍ଷ ପୂର୍ଣ୍ଣ ହେଉଥାଏ । ସେତିକି ବେଳେ ତାଙ୍କର ପତ୍ନୀଙ୍କର ମୃତ୍ୟୁ ହେଲା । ପ୍ୟାରିସ ପ୍ରଦର୍ଶନୀ ଡେମଲାରଙ୍କର ସମୃଦ୍ଧିର ଦ୍ୱାର ଖୋଲିଦେଲା । ସେହି ପ୍ରଦର୍ଶନୀ ପରେ ପୃଥିବୀର ବିଭିନ୍ନ ଦେଶରୁ ବହୁ ମଟରକାର ପାଇଁ ଅର୍ଡର ଆସିଲା ।

ଡେମଲାର ବଡ ଅଡୁଆରେ ପଡ଼ିଲେ । ସେ ଓ ମେବେଚ ଦେଖିଲେ କାରଖାନା ନ ବଢ଼ାଇଲେ ଏତେଗୁଡ଼ାଏ ମୋଟରକାର ଯୋଗାଇବା ସମ୍ଭବ ହେବନାହିଁ । ସେମାନେ ଭଲ ମେକାନିକମାନଙ୍କୁ ନେଇ ଗୋଟିଏ ଉନ୍ନତ ଧରଣର କାରଖାନା ପ୍ରତିଷ୍ଠା କରିବା ପାଇଁ ଉଦ୍ୟମକଲେ । କିନ୍ତୁ ଉନ୍ନତ କାରଖାନା ନିମନ୍ତେ ଯେତିକି ଧନ ଆବଶ୍ୟକ ସେତିକି ଧନ ଦୁଇ ବନ୍ଧୁଙ୍କ ପାଖରେ ନଥିଲା । ଏଣୁ ସେ ଏହି କାରଖାନା ନିମନ୍ତେ ଅନ୍ୟ ଅଂଶୀ-ଦାରମାନଙ୍କୁ ନେଇ ଗୋଟିଏ କମ୍ପାନୀ ଗଢ଼ିଲେ । ଏହାଦ୍ୱାରା ତାଙ୍କର ଉଦ୍ଦେଶ୍ୟ ପୂର୍ଣ୍ଣ ହେଲା ଓ ଆବଶ୍ୟକୀୟ ଧନ ମଧ୍ୟ ଆସିଲା ।

ଡେମଲାରଙ୍କର ଜୀବନର ପ୍ରଧାନ ସ୍ୱପ୍ନ ରୂପାୟିତ ହୋଇ ଉଠିଲା । ୧୮୯୦ ଖ୍ରୀଷ୍ଟାବ୍ଦ ତାଙ୍କ ଜୀବନର ଏକ ଅବିସ୍ମରଣୀୟ ବର୍ଷ । ସେହିବର୍ଷ ଡେମଲାର ଓ ମେବେଚ-ଙ୍କର ଚେଷ୍ଟାରେ ଡେମଲାର ମୋଟୋରେନ ଗେସଲସ୍‌ଚଟ ନାମକ କମ୍ପାନୀ ପ୍ରତିଷ୍ଠା କରାଗଲା । ଡେମଲାରଙ୍କର ପୁଅ ପାଉଲ ଓ ଏଡଲଫ, ଦୁହେଁ ଭଲ କାରିଗର । ସେମାନଙ୍କୁ ମଧ୍ୟ ଏ ନୂତନ କାରଖାନାରେ କାରିଗର ରୂପେ ରଖାଗଲା । ଏମାନଙ୍କର ବୟସ ଯଥାକ୍ରମେ ୨୧ ଓ ୧୯ ବର୍ଷ । ଡେମଲାରଙ୍କ ପ୍ରତିଭାର ପ୍ରତିବିମ୍ବ ଏ ଦୁଇ ପୁଅଙ୍କ ଉପରେ ପଡ଼ିଥିଲା । ସେମାନେ ମଧ୍ୟ ପିତାଙ୍କ ଭଳି ଦକ୍ଷ ଇଂଜିନିୟର ହେବାପାଇଁ ଚେଷ୍ଟା କରୁଥିଲେ ।

ଡେମଲାର ଉଦାରପନ୍ଥୀ ଥିଲେ । ତାଙ୍କର ମନକୁ ଗର୍ବ କେବେହେଲେ ସ୍ପର୍ଶ କରି ନଥିଲା । ସେ କାହାକିକୁ ଘୃଣାକରୁନଥିଲେ । ଶ୍ରମିକମାନଙ୍କୁ ସେ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । କାରଣ ସେ ବି ଦିନେ ଶ୍ରମିକ ଥିଲେ । କର୍ମଚାରୀମାନଙ୍କ ସହିତ ସେ ଜଣେ କର୍ମଚାରୀ ରୂପେ ମିଶୁଥିଲେ ଓ ତାଙ୍କର ଦୁଃଖ ଦୁର୍ଦ୍ଦଶା ବୁଝି ଆବଶ୍ୟକୀୟ ସାହାଯ୍ୟ ଦେଉଥିଲେ ।

ଡେମଲାର ଯେତିକି ଦୟାଳୁ ଥିଲେ ସେତିକି କଠୋର ମଧ୍ୟ ଥିଲେ । କୌଣସି କର୍ମଚାରୀଙ୍କର ବିଶୃଙ୍ଖଳ ସ୍ୱଭାବ କିମ୍ବା ଆଳସ୍ୟ ଦେଖିଲେ ସେ ଆଦୌ ସହ୍ୟ କରିପାରୁ ନ ଥିଲେ । କେହି ଶୃଙ୍ଖଳା ଭଙ୍ଗ କଲେ କିମ୍ବା ଆଦେଶ ଅମାନ୍ୟ କଲେ ସେ ତାଙ୍କୁ କ୍ଷମା କରୁ ନ ଥିଲେ । ଏଣୁ ଦୋଷୀକୁ ଦଣ୍ଡ ଦେବାପାଇଁ ସେ ତିଳେ ହେଲେ କୁଣ୍ଠାବୋଧ କରୁନଥିଲେ ।

ଥରେ ଡେମଲାର ଦେଖିଲେ ତାଙ୍କର ପୁଅ ପାଉଲ ଆଇନ ସମ୍ମତ ଗତିବେଗ ଅପେକ୍ଷା ଆହୁରି ତୀବ୍ର ଗତିରେ ଗାଡ଼ି ଚଳାଉଛନ୍ତି । ଏହା ଦେଖି ଡେମଲର ରଗିଗଲେ । ସେ ପୁଅକୁ କ୍ଷମା ନକରି ସବୁ କର୍ମଚାରୀଙ୍କ ସମ୍ମୁଖରେ ଦଣ୍ଡ ଦେଲେ । ତାଙ୍କର ନିରପେକ୍ଷତା ଓ ମଧୁର ବ୍ୟବହାର ହେତୁ ସମସ୍ତେ ତାଙ୍କୁ ଭଲ ପାଉଥିଲେ । ଏଣୁ ସମସ୍ତେ ତାଙ୍କର କଥା ତଳେ ପକାଇ ଦେଉ ନଥିଲେ ।

ଡେମଲରଙ୍କର ବ୍ୟବସାୟ ଦ୍ରୁତ ଗତିରେ ବଢ଼ିବାକୁ ଲାଗିଲା । ମଟର କାର୍‌ର ଚାହିଦା ବଢ଼ିବା ସଙ୍ଗେ ଆୟ ମଧ୍ୟ ବୃଦ୍ଧି ହେଲା । ୧୮୯୦ ଖ୍ରୀଷ୍ଟାବ୍ଦ ସୁଦ୍ଧା ବହୁ ଦେଶର ଇଞ୍ଜିନିୟରମାନେ ଏହି ନୂତନ ଧରଣର ଯାନ ବାହନର ବ୍ୟବହାର ଶିଖିଗଲେ ।

ସେତେବେଳେ ବେଞ୍ଜ ଓ ଅନ୍ୟ କେତେଜଣ ମଧ୍ୟ ଇଞ୍ଜିନ ତିଆରି କରୁଥିଲେ । କିନ୍ତୁ ସେମାନଙ୍କ ମଧ୍ୟରେ କାହାରି ଗୋଟିଏ ହେଲେ ଇଞ୍ଜିନ ଡେମଲରଙ୍କର ଇଞ୍ଜିନ ସହିତ ସମାନ ହୋଇପାରିଲା ନାହିଁ । ଇଞ୍ଜିନିୟରମାନେ ଡେମଲରଙ୍କ କମ୍ପାନୀରୁ ମୋଟର କାରର ଅଂଶମାନ କିଣିନେଇ ମୋଟରକାର୍ ତିଆରି କରିବାକୁ ଲାଗିଲେ ।

୧୮୯୩ ଖ୍ରୀଷ୍ଟାବ୍ଦ ଜୁଲାଇ ୮ ତାରିଖରେ ଡେମଲାରଙ୍କର ଫ୍ରେଉ ଲିନାହାଟ-ମାନଙ୍କ ସହିତ ପୁଣି ବିବାହ ହେଲା । ଲିନା ବଡ଼ ବୁଦ୍ଧିମତୀ । ଜର୍ମାନୀ, ଫ୍ରେଞ୍ଚ, ଇଂରାଜୀ ଓ ଇଟାଲୀ ଭାଷାରେ ଲିନାଙ୍କର ଅଗାଧ ଜ୍ଞାନ ଥିଲା । ସ୍ତ୍ରୀଙ୍କର ଭାଷା ଜ୍ଞାନ ମାଧ୍ୟମରେ ଡେମଲର ବହୁ ଶିକ୍ଷାବିତ୍‌ଙ୍କ ସହିତ ମିଶିବାର ସୁଯୋଗ ଲାଭ କରିଥିଲେ । ଦ୍ୱିତୀୟ ସ୍ତ୍ରୀଙ୍କ ସହିତ ଡେମଲାରଙ୍କର ଶେଷ ଜୀବନ ବଡ଼ ଆନନ୍ଦରେ କଟିଥିଲା ।

ଡେମଲରଙ୍କର ଇଞ୍ଜିନ ବ୍ରିଟେନରେ ଚଳାଇବାରେ ବହୁ ପ୍ରତିବନ୍ଧକ ଦେଖାଗଲା, କାରଣ ଲୋକେ ଏ ଇଞ୍ଜିନକୁ ଘୃଣା ଚକ୍ଷୁରେ ଦେଖୁଥିଲେ । ସେମାନେ ଏହାର ତୀବ୍ର ବିରୋଧ କଲେ । ଏଣୁ ଯେଉଁ କେତେଜଣ ମଟରକାର କିଣିଲେ ସେମାନେ ତାହା ରାସ୍ତାରେ ଚଳାଇବା ପାଇଁ ଭୟକଲେ । କିନ୍ତୁ ୧୮୯୬ ମସିହା ବେଳକୁ ଜନମତ ପରିବର୍ତ୍ତିତ ହେଲା । ମଟର ଚଳାଚଳକୁ ସମର୍ଥନକରି ଲୋକସଭା କରେ ବିଲ୍ ପାସ୍ କରଗଲା । ମଟର କାର ଓ ଅନ୍ୟ ଯାନବାହନ ପ୍ରତି ଲୋକଙ୍କୁ ଆକୃଷ୍ଟ କରିବା ପାଇଁ ଇଂଲଣ୍ଡରେ ଏକ ମଟର ପ୍ରଦର୍ଶନୀ କରାଗଲା । ଏହା ଇଂଲଣ୍ଡର ସର୍ବପ୍ରଥମ ମଟର ପ୍ରଦର୍ଶନୀ । ପ୍ରିନ୍ସ ଅଫ ୱେଲ୍‌ସ ଓ ସପ୍ତମ ଏଡଓ୍ୱାର୍ଡ ମଧ୍ୟ ଏ ପ୍ରଦର୍ଶନୀ ଦେଖିବାକୁ ଆସିଥିଲେ । ସେମାନେ ଡେମଲାରଙ୍କ ନିର୍ମିତ ଗୋଟିଏ କାରରେ ବସି ଏ ପ୍ରଦର୍ଶନୀ ଦେଖିଥିଲେ । ଏହି ପ୍ରଦର୍ଶନୀ ପରେ ଇଂଲଣ୍ଡରେ ମଟରକାରର ଚାହିଦା ବୃଦ୍ଧି ପାଇଲା । ୧୮୯୬ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡର ପାର୍ଲିୟାମେଣ୍ଟରେ ମୋଟିଭ୍‌ସ ଅନ ହାଇୱେ ଆକ୍ଟ ନାମରେ ଏକ ବିଲ ପାସ୍ ହେଲା । ଏହି ଆକ୍ଟ ଅନୁଯାୟୀ ମଟରକାରର ସର୍ବୋଚ୍ଚ ଗତି ଘଣ୍ଟାକୁ ବାର ମାଇଲ ସ୍ଥିର ହେଲା ।

ଡେମଲରଙ୍କର ବୟସ ସେତେବେଳେ ୬୬ ବର୍ଷ । କ୍ରମେ ତାଙ୍କର ଶାରୀରିକ ଅବସ୍ଥା ଖରାପ ହେବାକୁ ଲାଗିଲା । ସାରା ଜୀବନ କଠିନ ପରିଶ୍ରମ କରି ତାଙ୍କର ହୃଦୟ ଦୁର୍ବଳ ହୋଇ ଆସିଥିଲା । ଚିକିତ୍ସା କରି ମଧ୍ୟ ଶାରୀରିକ ଅବସ୍ଥାରେ କୌଣସି ଉନ୍ନତି ଘଟିଲା ନାହିଁ ।

୧୯୦୦ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସ ୬ ତାରିଖ । ଡେମଲରଙ୍କର ୬୬ ବର୍ଷ ବୟସ ପୂର୍ଣ୍ଣ ହେବାପାଇଁ ଆଉ ୧୧ ଦିନ ଥାଏ । ହଠାତ ତାଙ୍କର ହୃଦୟ ଯନ୍ତ୍ର କ୍ରିୟା ବନ୍ଦ ହୋଇଯାଇ ମୃତ୍ୟୁ ହେଲା । କନଷ୍ଟଟାଟରେ ତାଙ୍କର ଶବକୁ ସମ୍ମାନର ସହିତ କବର ଦିଆଗଲା । ବହୁ ବିଶିଷ୍ଟ ବ୍ୟକ୍ତି ତାଙ୍କୁ ଶେଷ ସମ୍ମାନ ପ୍ରଦର୍ଶନ କରିବା ପାଇଁ କବର ସ୍ଥାନରେ ଉପସ୍ଥିତ ଥିଲେ । ସ୍ୱିଡେନର ରଜା, ରୁଷର ଜାର ପ୍ରଭୃତି ସମ୍ମାନର ନିଦର୍ଶନ ସ୍ୱରୂପ ଫୁଲମାଳ ତା ପଠାଇଥିଲେ । ଡେମଲରଙ୍କର ଘର ସମ୍ମୁଖରେ ଏକ ସ୍ମୃତିସ୍ତମ୍ଭ ନିର୍ମାଣ କରଯାଇ ସେଥିରେ ଲେଖାଗଲା—"୧୮୮୫ ଖ୍ରୀଷ୍ଟାବ୍ଦରେ ଇଞ୍ଜିନର ଆବିଷ୍କାରକ ଯେଉଁ ଡେମଲାର ତାଙ୍କର ଏଇ ବିଗିଚ୍ଚ ଭିତରେ ପ୍ରଥମେ ଇଞ୍ଜିନ ଚ୍ଚଳନା କରିଥିଲେ ସେହି ଶାନ୍ତ ପ୍ରିୟ ଅମର ଡେମଲାରଙ୍କ ଉଦ୍ଦେଶ୍ୟରେ "

ଡେମଲାରଙ୍କର ମୃତ୍ୟୁ ପରେ ମେବେଚ କାରଖାନା ପରିଚ୍ଚଳନା କଲେ । ୧୯୦୧ ମସିହାରେ ଏହି କାରଖାନାରେ ମେରସିଡେ ନାମକ ଉନ୍ନତ ଧରଣର କାର୍ ନିର୍ମିତ ହେଲା ।

୧୯୨୪ ମସିହାରେ ବେଂଜଙ୍କର ମଟର କାରଖାନା ସହିତ ଡେମଲାରଙ୍କର କାରଖାନା ମିଶିଗଲା । ଏହି କମ୍ପାନୀର ନାମ ରଖାଗଲା 'ଡେମଲର ବେଂଜ କମ୍ପାନୀ' । ଏହି କାରଖାନାରେ ତିଆରି ହେଉଥିବା ମଟରଗୁଡ଼କର ନାମ ରଖାଗଲା ମେରସିଡେସ ବେଂଜ ।

●

# ବିଶ୍ୱବିଚିତ୍ରା

## (ବ୍ୟକ୍ତି ପରିଚୟ)

**ଆବୁଲ ଫଜଲ—୧୫୫୧—୧୬ ୨**

ଆବୁଲ ଫଜଲ, ଆକବରଙ୍କର ପ୍ରଧାନ ମନ୍ତ୍ରୀ ଥିଲେ । ସେ ଜଣେ ବିଖ୍ୟାତ ଐତିହାସିକ । ସେ ପ୍ରସିଦ୍ଧ ଗ୍ରନ୍ଥ 'ଅଇନ-ଇ-ଅକବରୀ' ଓ 'ଅକବରନାମା'ର ରଚୟିତା ।

**ଏସପ (ପ୍ରାୟ ୬୦୦ ଖ୍ରୀଷ୍ଟ ପୂର୍ବ)**

ଏସପ ଜଣେ ଗ୍ରୀକ୍ କ୍ରୀତଦାସ । ତାଙ୍କ ରଚିତ ଗଳ୍ପଗୁଡ଼ିକ ନୀତିବାକ୍ୟ ପୂର୍ଣ୍ଣ ଓ ବିଶ୍ୱପ୍ରସିଦ୍ଧ ।

**ଆଇବକ**

ଦିଲ୍ଲୀର ପ୍ରଥମ ସୁଲତାନ ଓ ଦାଶ ବଂଶର ସ୍ଥାପକ ।

**ଆକବର (୧୫୫୬—୧୬୦୫)**

ଭାରତରେ ବିଖ୍ୟାତ ମୋଗଲ ସମ୍ରାଟ । ସେ ଭୂସଂସ୍କାର ଆଇନ ପ୍ରଣୟନ କରିଥିଲେ । ସେ ଆନ୍ତର୍ ସାମ୍ପ୍ରଦାୟିକ ବିବାହକୁ ଅଧିକ ପସନ୍ଦ କରୁଥିଲେ । ସେ 'ଦୀନ—ଇ—ଇଲାହୀ ନାମରେ ଏକ ନୂତନ ଧର୍ମ ଉଦ୍‌ଭବନ କରିଥିଲେ ।

**ଆଲବେରୁନି**

ଜଣେ ବିଖ୍ୟାତ ଐତିହାସିକ । ଗଜନୀର ମାମୁଦ ଭାରତ ଆକ୍ରମଣ କରିବା ସମୟରେ ଆଲବେରୁନି ତାଙ୍କ ସହିତ ଭାରତ ଆସିଥିଲେ ।

**ଆଲେକଜାଣ୍ଡର (୩୫୬—୩୨୩ ବି.ସି)**

ବିଶ୍ୱବିଖ୍ୟାତ ଗ୍ରୀକ୍ ବିଜେତା । ଖ୍ରୀଷ୍ଟପୂର୍ବ ୩୨୭ରେ ସେ ଭାରତ ଆକ୍ରମଣ କରିଥିଲେ । ପୁରୁ ଓ ଅନ୍ୟ କେତେକ ରାଜାଙ୍କୁ ପରାସ୍ତ କରି ସେ ଅଗ୍ରସର ହେବା ସମୟରେ ତାଙ୍କର ସୈନ୍ୟମାନେ ବିଦ୍ରୋହ କରି ଆଗକୁ ଯିବାପାଇଁ ମନା କରି ଦେଇଥିଲେ । ଏଣୁ ଆଲେକଜାଣ୍ଡର ବାଧ୍ୟ ହୋଇ ଫେରିଗଲେ । ଭାରତରୁ ଫେରି ଯିବା ସମୟରେ ବାବିଲନଠାରେ ୫୩ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହେଲା ।

**ବି ଆର ଅମ୍ବେଦକର (୧୮୯୩—୧୯୫୬)**

ସେ ଜଣେ ବିଖ୍ୟାତ ଭାରତୀୟ ଜୁରିଷ୍ଟ । ରାଜନୀତିଜ୍ଞ, ସମାଜ ସଂସ୍କାରକ ଓ ଦଳିତ ଜାତିର ନେତା । ସେ ସଂବିଧାନ ପ୍ରସ୍ତୁତକାରୀ ଦଳର ଚେୟାରମ୍ୟାନ ଥିଲେ ଓ ଭାରତର ସ୍ୱାଧୀନତା ଲାଭ ପରେ ଭାରତୀୟ ସଂବିଧାନ ପ୍ରସ୍ତୁତ କରିବାରେ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ।

**କ୍ୟାପ୍ଟେନ ଆର ଆମଣ୍ଡସନ —୧୮୭୨ —୧୯୨୮**

ନରୱେର ବିଖ୍ୟାତ ଅଭିଯାତ୍ରୀ । ସର୍ବପ୍ରଥମ ସେ ଦକ୍ଷିଣ ମେରୁରେ ପହଞ୍ଚି ପାରିଥିଲେ । ସେ ଗୋଜା ନାମକ ଜାହାଜରେ ମେରୁ ଅଞ୍ଚଳକୁ ଉତ୍ତର ପଶ୍ଚିମ ପଥ ଆବିଷ୍କାର କରିଥିଲେ । ସେ ଫ୍ରାମ ନାମକ ଜାହାଜରେ ଦକ୍ଷିଣ ମେରୁରେ ପହଞ୍ଚି ଥିଲେ ।

**ଆଣ୍ଟୋନି—୮୩—୩୦ ଖ୍ରୀଷ୍ଟ ପୂର୍ବ**

ସେ ଜୁଲିଅସ ସିଜାରଙ୍କର ସମର୍ଥକ ଥିଲେ । କାଇଜାରଙ୍କ ପରେ ସେ ବ୍ରୁଟଶ ମାନଙ୍କ ବିରୁଦ୍ଧରେ ଲଢ଼ିଥିଲେ ।

**ଆର୍କିମେଡେସ (୨୮୭ – ୨୧୨ ଖ୍ରୀଷ୍ଟପୂର୍ବ**

ପ୍ରସିଦ୍ଧ ଗ୍ରୀକ୍ ଗଣିତଜ୍ଞ ଓ ବୈଜ୍ଞାନିକ । ସେ ଭସମାନ ପଦାର୍ଥର ତଥ୍ୟ ଆବିଷ୍କାର କରିଥିଲେ ।

**ଆରିଷ୍ଟୋଟଲ—୩୮୪—୩୨୨ ଖ୍ରୀଷ୍ଟପୂର୍ବ**

ସେ ଜଣେ ବିଖ୍ୟାତ ଦାର୍ଶନିକ, ଚିତ୍ରକାର, କବି ଓ ଚିନ୍ତକ । ସେ ଏକ ବିଖ୍ୟାତ ଦର୍ଶନ ଶାସ୍ତ୍ର ସ୍କୁଲର ପ୍ରତିଷ୍ଠାତା । ସେ ପ୍ଲାଟୋଙ୍କର ଶିଷ୍ୟ ଓ ଆଲେକଜାଣ୍ଡରଙ୍କର ଶିକ୍ଷକ ।

**ଆର୍ଯ୍ୟଭଟ୍ଟ—୪୭୬—୫୨୦—ଏ ଡି.**

ବିଖ୍ୟାତ ଭାରତୀୟ ମହାକାଶ ବିଜ୍ଞାନୀ ଓ ଗଣିତଜ୍ଞ । ସେ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କର ରାଜସଭାକୁ ଅଳଙ୍କୃତ କରିଥିଲେ । ଭାରତର ପ୍ରଥମ କୃତ୍ରିମ ଉପଗ୍ରହକୁ ତାଙ୍କ ନାମରେ ନାମିତ କରାଯାଇଛି ।

**ଅଶୋକ**

ଭାରତର ମହାନ ସମ୍ରାଟ ଓ ଚନ୍ଦ୍ରଗୁପ୍ତଙ୍କର ନାତି । ତରବାରି ଅପେକ୍ଷା ସେ ପ୍ରେମ ଓ ବିଶ୍ୱାସ ବଳରେ ବିଜୟକୁ ଅଧିକ ମହତ୍ତ୍ୱ ଦେଉଥିଲେ । କଳିଙ୍ଗ ଯୁଦ୍ଧ ପରେ ସେ ଯୁଦ୍ଧକୁ ପରିତ୍ୟାଗ କରି ବୌଦ୍ଧଧର୍ମ ଗ୍ରହଣ କରିଥିଲେ ।

**ବାବର**

ମୋଗଲ ସାମ୍ରାଜ୍ୟର ସ୍ଥାପୟିତା । ଭରତରେ ମୋଗଲମାନେ ୧୫୦ ବର୍ଷରୁ ଅଧିକ କାଳ ରାଜତ୍ୱ କରିଥିଲେ । ପ୍ରଥମ ପାନିପଥ ଯୁଦ୍ଧ ପରେ ବାବର ଦିଲ୍ଲୀ ସିଂହାସନ ଅଧିକାର କଲେ । (୧୫୨୬) ୧୫୨୬ରୁ ୧୫୩୦ ପର୍ଯ୍ୟନ୍ତ ଶାସନ କରିଥିଲେ ।

**ଦ୍ୱିତୀୟ ବାହାଦୁର ଶାହ**

ମୋଗଲ ସାମ୍ରାଜ୍ୟର ଶେଷ ରଜା । ୧୮୫୭ ଖ୍ରୀଷ୍ଟାବ୍ଦରେ ପ୍ରଥମ ଭରତୀୟ ସ୍ୱାଧୀନତା ସଂଗ୍ରାମରେ ସେ ଅଂଶ ଗ୍ରହଣ କରିଥିଲେ ।

**ବାଲବୋଆ, ଭସ୍କୋନ ନେଜଡି (୧୪୭୫ – ୧୫୧୭)**

ଜଣେ ସ୍ପେନୀୟ ଅଭିଯାତ୍ରୀ । ସର୍ବପ୍ରଥମ ସେ ପ୍ରଶାନ୍ତ ମହାସାଗର ଆବିଷ୍କାର କରିଥିଲେ ।

**ବାଣଭଟ୍ଟ**

ଭରତର ବିଖ୍ୟାତ ସଂସ୍କୃତ ପଣ୍ଡିତ ଓ କବି । ସପ୍ତମ ଶତାବ୍ଦୀରେ ସେ କାଦମ୍ବରୀ ଓ ହର୍ଷ ଚରିତ ରଚନା କରିଥିଲେ ।

**ସୁରେନ୍ଦ୍ରନାଥ ବାନାର୍ଜୀ—(୧୮୪୮-୧୯୨୫)**

ଭରତର ସୁପୁତ୍ର । ଭରତୀୟ ଜାତୀୟ କଂଗ୍ରେସର ଦୁଇଥର ସଭପତି ହୋଇଥିଲେ । ଇଂରେଜ ଶାସନ ସମୟରେ ସେ ବଙ୍ଗ ବିଭଜନର ପ୍ରବଳ ପ୍ରତିବାଦ କରିଥିଲେ ।

**ଉତ୍କଳମଣି ଗୋପବନ୍ଧୁ**

ମହାନ ସ୍ୱାଧୀନତା ସଂଗ୍ରାମୀ ଓ ଅସାଧାରଣ ଦେଶଭକ୍ତ । ଓଡ଼ଶାରେ ତ୍ୟାଗ ଓ ଜାତୀୟତାର ଜନକ । ତାଙ୍କର କାରାକବିତା ଓ ବନ୍ଦୀର ଆତ୍ମକଥା ପ୍ରଭୃତି ଅମର ରଚନା । ତାଙ୍କୁ ଓଡ଼ିଆ ଜାତିର ଜନକ କହିଲେ ଅତ୍ୟୁକ୍ତି ହେବନାହିଁ ।

**ବାତୁତାଇବନ**

ଦକ୍ଷିଣ ଆଫ୍ରିକାର ଜଣେ ପଣ୍ଡିତ ଓ ପରିବ୍ରାଜକ । ସେ ୧୩୩୩ ମସିହାରେ ଭରତକୁ ଆସିଥିଲେ । ସେ ଆଠବର୍ଷ କାଳ ଭରତରେ ରହି ମହମଦ ତୁଘଲକଙ୍କର ରାଜତ୍ୱ ସମ୍ବନ୍ଧରେ ଲେଖିଥିଲେ ।

**ଫକୀରମୋହନ ସେନାପତି**

ଓଡ଼ିଆ ଉପନ୍ୟାସର ଜନକ । ତାଙ୍କର ଅମର ଉପନ୍ୟାସ 'ମାମୁଁ' ଓ 'ଛମାଣ ଆଠଗୁଣ୍ଠ' ଓଡ଼ିଆ ତଥା ଭରତୀୟ ସାହିତ୍ୟରେ ସ୍ୱର୍ଣ୍ଣିମ ଅଧ୍ୟାୟ ସୃଷ୍ଟି କରିଯାଇଛି ।

**ବିଥୋଭେନ, ଲଡଭଇଗ ଭନ (୧୭୭୦—୧୮୨୭)**

ଜଣେ ଜର୍ମାନ । ସେ ବିଶ୍ୱର ସର୍ବଶ୍ରେଷ୍ଠ ସଙ୍ଗୀତଜ୍ଞ ଓ ସଙ୍ଗୀତ ରଚୟିତା । ୪୦

ବର୍ଷ ବୟସରେ ସେ ସମ୍ପୂର୍ଣ୍ଣ କାଲ ହୋଇଗଲେ ମଧ୍ୟ ବହୁ ବିଖ୍ୟାତ ସିମନୀ, ସଙ୍ଗୀତ, ସନେଟ ଓ କନସାର୍ଟ ରଚନା କରିଥିଲେ ।

**ବିସମାର୍କ (୧୮୧୫—୧୮୯୮)**

ଜଣେ ବିଖ୍ୟାତ ଜର୍ମାନ ରାଜନୀତିଜ୍ଞ । ତାଙ୍କର 'ବ୍ଲଡ ଆଣ୍ଡ ଆଇରନ' ନୀତିହେତୁ ସେ ବିଖ୍ୟାତ । ସେ ଜର୍ମାନ ସାମ୍ରାଜ୍ୟର ସଂସ୍ଥାପକ ।

**ଉମେଶଚନ୍ଦ୍ର ବାନାର୍ଜୀ**

ଭାରତୀୟ ଜାତୀୟ କଂଗ୍ରେସର ପ୍ରଥମ ସଭାପତି । (୧୮୮୫) ।

**ବକ୍ସି ଜଗବନ୍ଧୁ**

ଖୋର୍ଦ୍ଧାର ବୀର ପାଇକ ନେତା ଓ ମହାନ ଦେଶଭକ୍ତ । ଇଂରେଜମାନଙ୍କ ବିରୁଦ୍ଧରେ ବୀରତ୍ୱର ସହିତ ଯୁଦ୍ଧ କରି ବୀରଗତି ଲାଭ କରିଥିଲେ ।

**ନନ୍ଦଲାଲ ବୋଷ**

ପ୍ରସିଦ୍ଧ ଭାରତୀୟ ଚିତ୍ରକାର । ଶାନ୍ତିନିକେତନର କଳା ଭବନର ଡାଇରେକ୍ଟର ଥିଲେ । ୧୯୬୬ ଖ୍ରୀଷ୍ଟାବ୍ଦରେ ସେ ପରଲୋକ ଗମନ କଲେ ।

**ବୈଷ୍ଣବ ପାଣି**

ଓଡ଼ିଆ ଗୀତିନାଟ୍ୟର ଜନକ । ସେ ବହୁ ଗୀତିନାଟ୍ୟ ଓ କାବ୍ୟ ରଚନା କରି ଯାଇଛନ୍ତି । ତାଙ୍କର ଗୀତିନାଟ୍ୟ ନିୟମିତ ରୂପେ ଆକାଶ ବାଣୀରୁ ପ୍ରସାରିତ କରାଯାଏ ।

**ଧର୍ମପଦ**

ବାର ବର୍ଷ ବୟସ୍କ ଓଡ଼ିଆ ଶିଳ୍ପୀ ବାଳକ । ସେ ନ ଥିଲେ କୋଣାର୍କ ବିଶ୍ୱଖ୍ୟାତି ଅର୍ଜନ କରି ନ ଥାନ୍ତା । ବାରଶହ ଶିଳ୍ପୀଙ୍କର ବୁଦ୍ଧି ପରାହତ ହେବାପରେ ଧର୍ମପଦ କୋଣାର୍କର ଚୂଡ଼ା ପ୍ରସ୍ତର ସ୍ଥାପନ କରି ଜାତିପାଇଁ ଆତ୍ମବଳୀ ଦେଇଥିଲେ ।

**ଲର୍ଡ ଉଇଲିୟମ ବେଣ୍ଟିକ୍**

୧୮୨୮ ମସିହାରୁ ୧୮୩୫ ମସିହା ପର୍ଯ୍ୟନ୍ତ ଭାରତର ଗଭର୍ଣ୍ଣର ଜେନେରାଲ । ସମାଜ ସଂସ୍କାରକ ରୂପେ ସେ ପ୍ରସିଦ୍ଧ । ସେ ସତୀଦାହ ପ୍ରଥା ବନ୍ଦକରି ଠଗମାନଙ୍କୁ ଦମନ କରିଥିଲେ ଓ ନରବଳୀ ପ୍ରଥା ମଧ୍ୟ ବନ୍ଦ କରିଥିଲେ । ସେ ଭାରତରେ ଇଂରାଜୀ ଶିକ୍ଷାର ପ୍ରସାର କରିଥିଲେ ଓ ଏକ ସ୍ଥାୟୀ ଅର୍ଥନୀତି ପ୍ରତିଷ୍ଠା କରିଥିଲେ ।

**ଆନିବେଶାନ୍ତ (୧୮୪୭—୧୯୩୩)**

ଜଣେ ଆଇରିସ ମହିଳା । ଭାରତୀୟ ସ୍ୱାଧୀନତା ସଂଗ୍ରାମର ମହାନ ଓ ଏକନିଷ୍ଠ ସମର୍ଥକ । ଭାରତୀୟ ଥିଓସଫିକାଲ ସୋସାଇଟିର ସଂସ୍ଥାପିକା । ସେ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ଥିଲେ ।

**ବାଜୀ ରାଉତ**

ଢେଙ୍କାନାଳର ବୀର ବାଳକ । ସ୍ୱାଧୀନତା ସଂଗ୍ରାମ ସମୟରେ ଇଂରେଜ

ସିପାହୀ ମାନଙ୍କର ଆଦେଶ ଅମାନ୍ୟ କରି ତଙ୍ଗା ଖୋଲି ନ ଥିଲେ ଓ ଦେଶ ନିମନ୍ତେ ପ୍ରାଣଦେଇ ଅମର ହୋଇଛନ୍ତି ।

**ପ୍ରଥମ ଭାସ୍କର**

ସପ୍ତମ ଶତାବ୍ଦୀର ଭାରତୀୟ ମହାକାଶ ବିଜ୍ଞାନୀ । ବ୍ରହ୍ମ ଗୁପ୍ତଙ୍କର ସମସାମୟିକ । ତାଙ୍କର ନାମାନୁସାରେ ଭାରତର ଦ୍ୱିତୀୟ କୃତ୍ରିମ ଉପଗ୍ରହ 'ଭାସ୍କର'କୁ ନାମିତ କରା-ଯାଇଛି ।

**ଦ୍ୱିତୀୟ ଭାସ୍କର**

ଦ୍ୱାଦଶ ଶତାବ୍ଦୀର ମହାନ ଭାରତୀୟ ଗଣିତଜ୍ଞ । ଭାରତର ଦ୍ୱିତୀୟ କୃତ୍ରିମ ଉପଗ୍ରହ ସହିତ ତାଙ୍କର ନାମ ସଂଯୁକ୍ତ ।

**ଗୋପୀନାଥ ମହାନ୍ତି**

ମହାନ ଓଡ଼ିଆ ଔପନ୍ୟାସିକ । ବହୁ ପ୍ରସିଦ୍ଧ ଓଡ଼ିଆ ଉପନ୍ୟାସ ରଚନା କରିଛନ୍ତି । ଅମୃତର ସନ୍ତାନ ଉପନ୍ୟାସ ପାଇଁ ସେ ଭାରତୀୟ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ । ମାଟିମଟାଳ ଉପନ୍ୟାସ ପାଇଁ ସେ ପ୍ରଥମ ଓଡ଼ିଆ ଔପନ୍ୟାସିକ ରୂପେ ଜ୍ଞାନପୀଠ ପୁରସ୍କାର ଲାଭ କଲେ ।

**ଭାସ୍କରାଚାର୍ଯ୍ୟ**

ଦ୍ୱାଦଶ ଶତାବ୍ଦୀର ମହାନ ଭାରତୀୟ ଗଣିତଜ୍ଞ ଓ ମହାକାଶ ବିଜ୍ଞାନୀ । ତାଙ୍କର ପ୍ରସିଦ୍ଧ ସିଦ୍ଧାନ୍ତ ଶିରୋମଣି ଦୁଇଖଣ୍ଡ ଗଣିତ ସମ୍ବନ୍ଧୀୟ ଓ ଦୁଇଖଣ୍ଡ ଫଳିତ ଜ୍ୟୋତିଷ ଗ୍ରନ୍ଥ ଦ୍ୱାରା ସମୃଦ୍ଧ ।

**କୁମାରିଲ ଭଟ୍ଟ**

ଅଷ୍ଟମ ଶତାବ୍ଦୀର ଜଣେ ପ୍ରସିଦ୍ଧ ହିନ୍ଦୁଧର୍ମ ପ୍ରଚାରକ ।

**ଜେଡ୍-ଏ-ଭୁଟ୍ଟୋ**

ପାକିସ୍ତାନର ଭୂତପୂର୍ବ ପ୍ରଧାନ ମନ୍ତ୍ରୀ । ୧୯୭୯ ମସିହା ଏପ୍ରିଲ ୪ ତାରିଖରେ ତାଙ୍କୁ ରାଓଲପିଣ୍ଡିରେ ଫାଶୀ ଦିଆଗଲା ।

**ଚାନ୍ଦବିବି**

ଆହମଦନଗର ରାଜାଙ୍କର କନ୍ୟା । ସେ ବିଜାପୁରର ରାଜା ଅଲି ଆଦିଲ ଶାହଙ୍କୁ ବିବାହ କରିଥିଲେ । ସେ ଆଓରଙ୍ଗଜେବଙ୍କର ସୈନ୍ୟଙ୍କ ବିରୁଦ୍ଧରେ ବୀରତ୍ୱର ସହିତ ଯୁଦ୍ଧକରି ଯୁଦ୍ଧକ୍ଷେତ୍ରରେ ମୃତ୍ୟୁବରଣ କରିଥିଲେ ।

**ନେତାଜୀ ସୁଭାଷଚନ୍ଦ୍ର ବୋଷ**

ଜଣେ ମହାନ ବିପ୍ଳବୀ ନେତା । ଭାରତୀୟ ଜାତୀୟ କଂଗ୍ରେସର ସଭାପତି ଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସେ ଭାରତରୁ ପଳାୟନ କରି ଜାପାନର ସହାୟତାରେ

ଆଇ-ଏନ-ଏ (ଭାରତୀୟ ଜାତୀୟ ସେନା) ଗଠନ କରି ମିତ୍ର ଶକ୍ତି ବିରୁଦ୍ଧରେ ଯୁଦ୍ଧ କରିଥିଲେ ।

**ଲୁଇସ୍‌ବ୍ରେଲ**

ଅନ୍ଧମାନଙ୍କ ପାଇଁ ବ୍ରେଲ ଲିପିର ଆବିଷ୍କାରକ । ଅନ୍ଧମାନଙ୍କର ଅନ୍ଧାର ଦୁନିଆକୁ ବ୍ରେଲ ନିଜର ଆବିଷ୍କାର ଦ୍ୱାରା ଆଲୋକିତ କରିପାରିଛନ୍ତି ।

**ଗୌତମ ବୁଦ୍ଧ**

ବୌଦ୍ଧଧର୍ମର ପ୍ରତିଷ୍ଠାତା । କପିଳବାସ୍ତୁର ରାଜା ଶୁଦ୍ଧୋଦନଙ୍କର ପୁତ୍ର । ସେ ରାଜସିଂହାସନ ତ୍ୟାଗକରି ସନ୍ୟାସ ଗ୍ରହଣ କରିଥିଲେ । ସେ ବୋଧଗୟାରେ ଗୋଟିଏ ବୋଧିଦ୍ରୁମ ତଳେ ଜ୍ଞାନଲାଭ କରିଥିଲେ । ସେ ବିଶ୍ୱଶାନ୍ତି ଓ ଅହିଂସାର ପ୍ରତୀକ ।

**ପର୍ଲ ଏସ-ବକ୍**

ଚୀନ ଉପରେ ସେ ବହୁ ପ୍ରସିଦ୍ଧ ଉପନ୍ୟାସ ଲେଖିଯାଇଛନ୍ତି । ଗୁଡ୍ ଆର୍ଥ ଉପନ୍ୟାସ ଉପରେ ସେ ୧୯୩୦ ମସିହାରେ ନୋବେଲ ପୁରସ୍କାର ଲାଭ କରିଥିଲେ । ୧୯୩୨ ମସିହାରେ ସେ ପୁଲିଜର ପୁରସ୍କାର ଲାଭ କଲେ । ୧୯୭୩ ମସିହାରେ ୮୦ ବର୍ଷ ବୟସରେ ତାଙ୍କର ମୃତ୍ୟୁହେଲା ।

**ଜନ କ୍ୟାବଟ—(୧୪୫୫ – ୧୪୯୮)**

ଜଣେ ଇଟାଲୀୟ ଅଭିଯାତ୍ରୀ । ବ୍ରିଷ୍ଟଲରେ ବାସ କରୁଥିଲେ । ସେ ନିଉଫାଉଣ୍ଡ ଲ୍ୟାଣ୍ଡ ଓ ନୋଭା ସ୍କୋଟିୟା ଆବିଷ୍କାର କରିଥିଲେ ।

**ଜୁଲିଅସ ସିଜର (୧୦୦-୪୪ ଖ୍ରୀଷ୍ଟପୂର୍ବ)**

ସେ ଜଣେ ରୋମାନ ସେନାପତି । ଗାଲ ଓ ବ୍ରିଟେନ ଆକ୍ରମଣ କରିଥିଲେ । ଗୃହ ଯୁଦ୍ଧରେ ପମ୍ପେଙ୍କୁ ପରାସ୍ତ କରିଥିଲେ । ଶେଷରେ ସେ ନିଜର ବିଶ୍ୱସ୍ତ ବନ୍ଧୁ ବ୍ରୁଟସଙ୍କ ଦ୍ୱାରା ନିହତ ହେଲେ ।

**ଲର୍ଡ କ୍ୟାନିଙ୍ଗ**

୧୮୫୬-୫୮ ମସିହା ପର୍ଯ୍ୟନ୍ତ ସେ ଇଷ୍ଟ ଇଣ୍ଡିଆ କମ୍ପାନୀର ଶେଷ ଗଭର୍ଣ୍ଣର ଜେନେରାଲ ଓ ଇଂରେଜ ଶାସନରେ ୧୮୫୮-୧୮୬୨ ପର୍ଯ୍ୟନ୍ତ ଭାରତର ଭାଇସରୟ ଥିଲେ । ତାଙ୍କରି ସମୟରେ ସିପାହୀ ବିଦ୍ରୋହ ହୋଇଥିଲା ।

**ଉଇଲିୟମ କ୍ୟାକ୍ସଟନ (୧୪୨୨-୧୪୯୧)**

ସେ ଇଂଲଣ୍ଡରେ ପ୍ରଥମ ଇଂରାଜୀ ପ୍ରିଣ୍ଟିଙ୍ଗ ପ୍ରେସ ପ୍ରତିଷ୍ଠା କରିଥିଲେ ।

**ଚୈତନ୍ୟ—୧୪୮୫-୧୫୩୩**

ନଦିୟାରେ ଜନ୍ମ । ଭକ୍ତି ଆନ୍ଦୋଳନର ଜନକ । ସେ ଶ୍ରୀକୃଷ୍ଣଙ୍କର ଭକ୍ତ ଏବଂ ପ୍ରେମ ଓ ଭକ୍ତିର ପ୍ରଚାରକ ।

**ଚାଣକ୍ୟ**

ଚାଣକ୍ୟ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କର ପ୍ରଧାନ ମନ୍ତ୍ରୀ ଥିଲେ । ତାଙ୍କରି ସହାୟତାରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ସେ ପ୍ରସିଦ୍ଧ ଅର୍ଥ ଶାସ୍ତ୍ରର ପ୍ରଣେତା । ତାଙ୍କର ଅନ୍ୟନାମ କୌଟିଲ୍ୟ ।

**ଦ୍ଵିତୀୟ ଚନ୍ଦ୍ରଗୁପ୍ତ (ବିକ୍ରମାଦିତ୍ୟ)**

ଗୁପ୍ତ ବଂଶର ସେ ଜଣେ ଦୁଃସାହସୀ ସମ୍ରାଟ । ତାଙ୍କ ସମୟରେ ହିନ୍ଦୁସ୍ଥାନ ଏକ ହୋଇ ପାରିଥିଲା । କଳା ଓ ସାହିତ୍ୟ ତାଙ୍କ ସମୟରେ ପୂର୍ଣ୍ଣ ବିକାଶ ଲାଭ କରି-ଥିଲା । ତାଙ୍କ ରାଜତ୍ୱ ସମୟରେ ପ୍ରଥମ ଚୀନ ପରିବ୍ରାଜକ ଫାହିୟାନ ଭାରତ ଆସି-ଥିଲେ ।

**ଚାର୍ଲି ଚାପଲିନ**

ବ୍ରିଟେନରେ ଜନ୍ମ । ବିଶ୍ୱବିଖ୍ୟାତ ହାସ୍ୟରସ ଅଭିନେତା । ସେ ନିଜ ଅଭିନୟ ଦ୍ୱାରା କୋଟିକୋଟି ଲୋକଙ୍କ ମୁହଁରେ ହସ ଫୁଟାଇ ପାରିଛନ୍ତି ।

**ବଙ୍କିମ ଚନ୍ଦ୍ର ଚାଟାର୍ଜ୍ଜୀ**

ଜଣେ ମହାନ ଦେଶଭକ୍ତ । କବି ଓ ଔପନ୍ୟାସିକ । ସେ 'ବନ୍ଦେମାତରମ୍' ର ପ୍ରଣେତା ।

**ପୃଥ୍ୱୀରାଜ ଚୌହାନ**

ବିଖ୍ୟାତ ରାଜପୁତ ସମ୍ରାଟ । ସେ ସଂଯୁକ୍ତାଙ୍କୁ ନେଇ ଯାଇଥିଲେ । ଏହି କାରଣରୁ ସଂଯୁକ୍ତାଙ୍କର ପିତା ଜୟଚାନ୍ଦ, ମହମ୍ମଦ ଘୋରୀଙ୍କ ସାହାଯ୍ୟରେ ତାଙ୍କ ବିରୁଦ୍ଧରେ ପୃଥ୍ୱୀ-ରାଜ ଯୁଦ୍ଧରେ ନିହତ ହେଲେ ।

**ଚେଙ୍ଗିଜ ଖାଁ**

ଆଲଟମାସଙ୍କ ରାଜତ୍ୱ ସମୟରେ ଆକ୍ରମଣ କରିଥିଲେ; କିନ୍ତୁ ସେ ସିନ୍ଧୁ ଠାରୁ ଫେରିଯାଇଥିଲେ ।

**ନିଏନ ଉଦ୍ଦିନ ଚିସ୍ତି**

ଅଷ୍ଟମ ଶତାବ୍ଦୀର ଜଣେ ପ୍ରଖ୍ୟାତ ସାଧକ । ଆଜମୀରରେ ତାଙ୍କୁ କବର ଦିଆଯାଇଥିଲା । ତାଙ୍କର ସମ୍ମାନାର୍ଥେ ପ୍ରତିବର୍ଷ ସେଠାରେ ଉର୍ସ ପାଳନ କରଯାଏ ।

**ସଲୀମ ଉଦ୍ଦିନ ଚିସ୍ତି**

ଜଣେ ସୁଫୀ ସାଧୁ । ତାଙ୍କରି ଆଶୀର୍ବାଦରେ ଆକବର ପୁତ୍ର ଲାଭ କରିଥିଲେ । ଫତେପୁର ସିକ୍ରୀରେ ତାଙ୍କୁ କବର ଦିଆଯାଇଥିଲା ।

**ରାଜରାଜ ଚୋଳ**

ସେ ଜଣେ ମହାନ ବିଜେତା । ଟାକ୍‌କୋଲମ ଯୁଦ୍ଧରେ ଚୋଳମାନେ ପରାସ୍ତ ହୋଇ ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲେ । ପେଞ୍ଚ ରାଜରାଜ ପୁଣି ସେହି ପୂର୍ବ ଗୌରବ ଫେରାଇ ଆଣିଥିଲେ । ସେ ଜଣେ ଦକ୍ଷ ଶାସକ । ସ୍ଥାନୀୟ ସ୍ୱାୟତ୍ତ ଶାସନର ସେ ସୁଦର ସଂସ୍କାର କରିଥିଲେ ।

**ରାଜେନ୍ଦ୍ର ଚୋଳ**

ଏକାଦଶ ଶତାବ୍ଦୀରେ ସେ ଚୋଳବଂଶର ଜଣେ ପ୍ରଖ୍ୟାତ ରାଜା ଥିଲେ । ସେ ୧୦୧୮ରୁ ୧୦୪୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଶାସନ କରିଥିଲେ । ତାଙ୍କର ଏକ ଶକ୍ତିଶାଳୀ ନୌବାହିନୀ ଥିଲା । ସେହି ନୌଶକ୍ତି ବଳରେ ସେ ସିଲୋନ, ପେଗୁ, ଆଣ୍ଡାମାନ ଓ ନିକୋବରକୁ ନିଜସାମ୍ରାଜ୍ୟ ଭୁକ୍ତ କରିପାରିଥିଲେ ।

**ସାର ୱିନଷ୍ଟନ ଚର୍ଚ୍ଚିଲ—୧୮୭୪—୧୯୬୫**

ଜଣେ ପ୍ରଖ୍ୟାତ ବ୍ରିଟୀଶ ରାଜନେତା । ବୋଅର ଯୁଦ୍ଧରେ ସେ ଅଂଶ ଗ୍ରହଣ କରିଥିଲେ । ୧୯୦୩ ଖ୍ରୀଷ୍ଟାବ୍ଦରେ ସେ ପାର୍ଲିଅମେଣ୍ଟରେ ପ୍ରବେଶ କଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସେ ବ୍ରିଟେନର ପ୍ରଧାନ ମନ୍ତ୍ରୀ ଥିଲେ । ସେ ବହୁ ବିଖ୍ୟାତ ପୁସ୍ତକ ରଚନା କରିଛନ୍ତି ।

**ରବର୍ଟ କ୍ଲାଇଭ—୧୭୨୫—୧୭୭୪**

ପ୍ରଥମେ ଇଷ୍ଟ ଇଣ୍ଡିଆ କମ୍ପାନୀରେ କିରାଣି ଥିଲେ । ସେ ଭାରତରେ ଫ୍ରେଞ୍ଚ-ମାନଙ୍କ ବିରୁଦ୍ଧରେ ଲଢ଼ ବ୍ରିଟୀଶ ସେନାକୁ ବିଜୟୀ କରିଥିଲେ । ୧୭୫୭ ମସିହାର ପଲାସୀ ଯୁଦ୍ଧ ପରେ ସେ ଭାରତ ଶାସନ କରି ୧୭୬୫ ଖ୍ରୀଷ୍ଟାବ୍ଦରେ ଗଭର୍ଣ୍ଣର ହେଲେ । ୧୭୭୪ ଖ୍ରୀଷ୍ଟାବ୍ଦରେ ସେ ନିଜକୁ ଗୁଳି କରି ଆତ୍ମହତ୍ୟା କଲେ ।

**ଖ୍ରୀଷ୍ଟୋଫର କଲମ୍ବସ (୧୪୪୬—୧୫୦୬)**

ଜଣେ ଇଟାଲୀୟ ନାବିକ । ଭାରତ ଆସିବା ପାଇଁ ସ୍ପେନର ରାଜା ଓ ରାଣୀଙ୍କ ଜାହାଜଟିଏ ମାଗିଲେ । ୧୪୯୨ ଖ୍ରୀଷ୍ଟାବ୍ଦରେ ସେ ଜଳଯାତ୍ରା ଆରମ୍ଭ କଲେ । ସେହି ବର୍ଷ ଆବିଷ୍କାର କଲେ ୱେଷ୍ଟ ଇଣ୍ଡୀଜ । ୧୪୯୮ ଖ୍ରୀଷ୍ଟାବ୍ଦରେ ସେ ଦକ୍ଷିଣ ଆମେରିକା ଆବିଷ୍କାର କଲେ ଓ ୧୫୦୩ ଖ୍ରୀଷ୍ଟାବ୍ଦରେ ମଧ୍ୟ ଆମେରିକାରେ ପହଞ୍ଚିଲେ ।

**କନଫୁସିଅସ (୫୫୧—୪୭୮) ବି ସି.**

ଚୀନର ଦାର୍ଶନିକ । ସେ କନଫୁସିଅନଜିମ ଧର୍ମ ଆବିଷ୍କାର କରିଥିଲେ । ସେ ଅନ୍ୟପ୍ରତି ପ୍ରେମ ଓ ଦୟା କରିବା ଶିକ୍ଷା ଦେଉଥିଲେ । ଚୀନର ସମସ୍ତେ ତାଙ୍କୁ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ।

**କ୍ୟାପ୍ଟେନ ଜେମସ କୁକ୍—୧୭୨୮—୧୭୭୯**

ଇଂରେଜ ନାବିକ ଓ ଅଭିଯାତ୍ରୀ । ଦକ୍ଷିଣ ସାଗରରେ ଜଳଯାତ୍ରା କରି ସେ

ବନ୍ଦୁ ଆବିଷ୍କାର କରିଥିଲେ । ଅଷ୍ଟ୍ରେଲିୟା ଓ ନିଉଜିଲାଣ୍ଡ ଆଖପାଖରେ ତାଙ୍କର ଆବିଷ୍କାର ସଂଖ୍ୟା ମଧ୍ୟ କମ ନୁହେଁ । ହାଓ୍ୱାଇର ଅଧିବାସୀମାନେ ତାଙ୍କୁ ହତ୍ୟା କରିଥିଲେ । ସେ ନିଜ ରଚନା 'ଭୟେଜେସ ରାଉଣ୍ଡ ଦି ୱାର୍ଲ୍ଡ' ହେତୁ ସର୍ବଜନ ପରିଚିତ ।

**ନିକୋଲାସ କୋପର ନିକସ** (୧୪୭୩—୧୫୪୩)

ପୋଲାଣ୍ଡର ଜଣେ ପୁରୋହିତ ଏବଂ ଫଳିତ ଜ୍ୟୋତିଷୀ । ପୃଥିବୀ ଏକ ଗ୍ରହ ଏବଂ ସୂର୍ଯ୍ୟ ଚାରିପାଖରେ ବୁଲୁଛି ଓ ପୃଥିବୀ ବ୍ରହ୍ମାଣ୍ଡର କେନ୍ଦ୍ର ନୁହେ, ଏହା ସେ ଆବିଷ୍କାର କରିଥିଲେ ।

**ଲର୍ଡ କର୍ଣ୍ଣ ଓ୍ୟାଲିସ**—୧୭୩୮—୧୮୦୫

ଜଣେ ଦକ୍ଷ ଶାସକ । ସେ ୧୭୮୬ରୁ ୧୭୯୩ ପର୍ଯ୍ୟନ୍ତ ଭାରତର ଗଭର୍ଣ୍ଣର ଜେନେରାଲ୍ ଥିଲେ । ଅଧିକ କ୍ଷମତା ହାସଲ କରିବା ପାଇଁ ସେ ୧୭୮୪ ଖ୍ରୀଷ୍ଟାବ୍ଦର ପିଟ୍‌ସ ଇଣ୍ଡିଆ ଆକ୍ଟକୁ ସଂଶୋଧନ କରାଇଥିଲେ । ୧୭୯୩ ଖ୍ରୀଷ୍ଟାବ୍ଦରେ ସେ ବଙ୍ଗରେ ଜମିଦାର ଓ ରୟେତମାନଙ୍କର ସ୍ଥାୟୀ ବନ୍ଦୋବସ୍ତ କରିଥିଲେ ।

**ଅଲିଭର କ୍ରମଓ୍ୱେଲ**—୧୫୯୯—୧୬୫୮)

ଇଂଲଣ୍ଡର ଜଣେ ସୈନିକ ରାଜନୀତିଜ୍ଞ । ତାଙ୍କ ସମୟରେ ଇଂଲଣ୍ଡରୁ ସମ୍ରାଟ ବାଦ ଲୋପ ପାଇଥିଲା । ସେ ବ୍ରିଟେନରେ କମନଓ୍ୱେଲଥ ପ୍ରତିଷ୍ଠା କରିଥିଲେ ଓ ଲର୍ଡ ପ୍ରୋଟେକ୍ଟର ଉପାଧି ଧରି ବ୍ରିଟେନର ପ୍ରଥମ କମନଓ୍ୱେଲ୍‌ଥ ମୁଖ୍ୟ ହୋଇଥିଲେ ।

**ମା'ଡ଼ାମ୍ ମେରି କ୍ୟୁରୀ**—୧୮୬୭ —୧୯୩୪)

ପୋଲାଣ୍ଡର ପଦାର୍ଥ ଓ ରସାୟନ ବିଜ୍ଞାନୀ । ରୋଗରେ ରେଡ଼ିୟମର ବ୍ୟବହାରର ଆବିଷ୍କାର ପାଇଁ ସେ ଖ୍ୟାତି ଲାଭ କରିଥିଲେ । ସେ ଓ ତାଙ୍କର ସ୍ୱାମୀ ପ୍ରଫେସର ପିରେ (୧୮୫୯—୧୯୦୬) ୧୯୦୩ ଖ୍ରୀଷ୍ଟାବ୍ଦରେ ଏକ ସାଙ୍ଗରେ ନୋବେଲ ପୁରସ୍କାର ଲାଭ କରିଥିଲେ । ୧୯୧୧ ଖ୍ରୀଷ୍ଟାବ୍ଦରେ ସେ ପୁଣି ରସାୟନରେ ନୋବେଲ ପୁରସ୍କାର ଲାଭ କରିଥିଲେ ।

**ଲର୍ଡ କର୍ଜନ** (୧୮୫୯—୧୯୨୫)

ଜଣେ ମହାନ ଶାସକ ଓ ରାଜନୀତିଜ୍ଞ । ୧୮୮୯—୧୯୦୫ ପର୍ଯ୍ୟନ୍ତ ଭାରତର ଭାଇସରାୟ ଥିଲେ । ୧୯୧୯—୧୯୨୩ ପର୍ଯ୍ୟନ୍ତ ସେ ବ୍ରିଟେନର ବୈଦେଶିକ ସେକ୍ରେଟେରୀ ଥିଲେ ।

**ଦାଂତେ** (୧୨୬୫ – ୧୩୨୧)

ଜଣେ ବିଖ୍ୟାତ ଇଟାଲୀୟ କବି । ସେ ପ୍ରସିଦ୍ଧ 'ଡିଭାଇନା କମେଡ଼ିୟା'ର ପ୍ରଣେତା ।

**ଲର୍ଡ ଡାଲହାଉସି**

ସେ ୧୮୪୮ରୁ ୧୮୫୬ ପର୍ଯ୍ୟନ୍ତ ଭାରତର ଗଭର୍ଣ୍ଣର ଜେନେରାଲ ଥିଲେ ।

ସେତେବେଳେ ଭରତ ଇଷ୍ଟଇଣ୍ଡିଆ କମ୍ପାନୀ ଶାସନରେ ଥିଲା । ସେ ଡକ୍ଟ୍ରିନ ଅଫ ଲାପ୍ସ ପ୍ରଚଳନ କରି ବହୁ ରାଜ୍ୟ ଇଂରେଜ ସାମ୍ରାଜ୍ୟଭୁକ୍ତ କରିଥିଲେ । ଏହା ଫଳରେ ସିପାହୀ ବିଦ୍ରୋହ ସୃଷ୍ଟି ହେଲା । ସେ ଭରତରେ ରେଳ ଓ ଟେଲିଗ୍ରାମ ପ୍ରଚଳନ କରିଥିଲେ ।

**ଉଇଲିୟମ ଡାମପେୟାର—୧୬୫୨—୧୭୧୫)**

ଜଣେ ଇଂରେଜ ନାବିକ । ୧୬୮୮ ଖ୍ରୀଷ୍ଟାବ୍ଦରେ ଉତ୍ତର ଓ ପଶ୍ଚିମ ଅଷ୍ଟ୍ରେଲିୟା ଉପକୂଳ ଆବିଷ୍କାର କରିଥିଲେ । ଡାମପେୟାର ଷ୍ଟ୍ରେଟ ଓ ଡାମପେୟାର ଆର୍ଚିପେଲଗୋ ତାଙ୍କରି ନାମରେ ନାମିତ କରଯାଇଛି ।

**ଦାରସିକୋ**

ସାହଜାହାନଙ୍କର ଜ୍ୟେଷ୍ଠ ପୁତ୍ର । ସେ ଜଣେ ଧାର୍ମିକ ବ୍ୟକ୍ତି । କିନ୍ତୁ ସିଂହାସନ ନିମନ୍ତେ ସେ ଆଉରଙ୍ଗଜେବଙ୍କ ଷଡଯନ୍ତ୍ର ର ଶିକାର ହୋଇ ସିଂହାସନ ହରଇଲେ ।

**ଚାର୍ଲସ ରବର୍ଟ ଡାରଉଇନ—୧୮୦୯ – ୧୮୮୨**

ଜଣେ ବିଖ୍ୟାତ ବୈଜ୍ଞାନିକ । ଦକ୍ଷିଣ ସାଗରରେ ପ୍ରାଣୀ ଜୀବନ ଅଧ୍ୟୟନ କରି ସେ ନିଜର ବିଖ୍ୟାତ ପୁସ୍ତକ—'ଦି ଅରିଜିନ ଅଫ ସ୍ପେସିସ' ଲେଖିଥିଲେ । ଏହା ବିବର୍ତ୍ତନବାଦର ଏକ ସମୀକ୍ଷା ।

**ଚିତ୍ତରଞ୍ଜନ ଦାସ—୧୮୭୦-୧୯୨୫**

ପ୍ରଖ୍ୟାତ ଭରତୀୟ ଦେଶଭକ୍ତ ଓ ସ୍ୱାଧୀନତା ସଂଗ୍ରାମୀ । ସେ ସ୍ୱରଜିଷ୍ଟ ଦଳ ଗଠନ କରିଥିଲେ (୧୯୨୩) । ଜହରଲାଲ ନେହୁରଙ୍କ ସହିତ ସେ ଜାଲିଆନାବାଗ କାଣ୍ଡ ସମ୍ବନ୍ଧରେ ଅନୁସନ୍ଧାନ କରିଥିଲେ ।

**ସର ହାମ୍ଫ୍ରେ ଡେଭି—୧୭୭୮-୧୮୨୯**

ଜଣେ ବୈଜ୍ଞାନିକ । ବହୁ ଆବିଷ୍କାର କରିଛନ୍ତି । ସୋଡ଼ିୟମ ଓ ଲାଫିଙ୍ଗ ଗ୍ୟାସ ତାଙ୍କରି ଆବିଷ୍କାର । ସେ ଖଣି ଶ୍ରମିକମାନଙ୍କ ନିମନ୍ତେ ସେଫ୍‌ଟି ଲ୍ୟାମ୍ପ ଆବିଷ୍କାର କରିଥିଲେ ।

**ଦୟାନନ୍ଦ ସରସ୍ୱତୀ—୧୮୨୪—୧୮୮୩**

ଜଣେ ମହାନ ହିନ୍ଦୁ ସମାଜ ସଂସ୍କାରକ ଓ ଆର୍ଯ୍ୟ ସମାଜ ସ୍କୁଲର ପ୍ରତିଷ୍ଠାତା । ନିଜ ପ୍ରଣୀତ ସତ୍ୟାର୍ଥ ପ୍ରକାଶରେ ସେ ବିଭିନ୍ନ ଧର୍ମର ତୁଳନାତ୍ମକ ସମୀକ୍ଷା କରିଛନ୍ତି । ଅସ୍ପୃଶ୍ୟତା ଓ ଅନ୍ୟ କୁସଂସ୍କାର ହିନ୍ଦୁ ସମାଜରୁ ଦୂର କରିବା ପାଇଁ ସେ ପ୍ରବଳ ଉଦ୍ୟମ କରିଥିଲେ ।

**ଓ୍ୟାଲ୍‌ଟ ଡିସନେ**

ଜଣେ ଆମେରିକାର କାର୍ଟୁନିଷ୍ଟ । ସେ ମିକି ମାଉସ ଓ ଅନ୍ୟ କାର୍ଟୁନର ସ୍ରଷ୍ଟା । ସେ ଡିସନେ ଲଣ୍ଡର ପ୍ରତିଷ୍ଠାତା ।

**ଫେରନରୀ ଓ'ଫାଉଲ**

ଯୁକ୍ତରାଷ୍ଟ୍ରର ପ୍ରଖ୍ୟାତ ଚିତ୍ରକାର ଓ ବୈଜ୍ଞାନିକ । ସେ ଓ ତାଙ୍କର ଭାଇ ସମ୍ମିଳିତ ୧୯୦୪ ଖ୍ରୀଷ୍ଟାବ୍ଦରେ ହେଲିକପ୍ଟର ଆବିଷ୍କାର କରିଥିଲେ ।

**ନ୍ୟାପେ**

ଫରାସୀ ଭରତରେ ସେ ସର୍ବଶ୍ରେଷ୍ଠ ସେନାନାୟକ ଥିଲେ । ଫ୍ରାନ୍ସ ନିମନ୍ତେ ୟୁରୋପରେ ଏକ ସାମ୍ରାଜ୍ୟ ଗଠନ ପାଇଁ ସେ ଚେଷ୍ଟା କରିଥିଲେ । ଦ୍ୱିତୀୟ କର୍ଣ୍ଣାଟକ ଯୁଦ୍ଧରେ ସେ ଇଂରେଜମାନଙ୍କୁ ପରାଜିତ କରି ଅସାଧାରଣ ସାଫଲ୍ୟ ଅର୍ଜନ କରିଥିଲେ ।

**ଏଡୋଇ ଆଲଭା ଏଡିସନ**

ଆମେରିକାର ଜଣେ ମହାନ ଆବିଷ୍କାରକ । ସେ ଜଣେ ସମ୍ବାଦପତ୍ର ବିକ୍ରେତା ରୂପେ ନିଜର ଜୀବନ ଆରମ୍ଭ କରିଥିଲେ । ପରେ ଟେଲିଗ୍ରାଫ ଅପରେଟର ରୂପେ କାର୍ଯ୍ୟକଲେ । ସେ ଚଳଚ୍ଚିତ୍ର, ଗ୍ରାମୋଫୋନ ଓ ଇଲେକ୍‌ଟ୍ରିକ ବଲ୍‌ବ ସହିତ ଏକ ହଜାରରୁ ଅଧିକ ଆବିଷ୍କାର କରିଛନ୍ତି ।

**ଆଲବର୍ଟ ଆଇନ ଷ୍ଟାଇନ ୧୮୭୯–୧୯୫୫**

ଜଣେ ବିଶ୍ୱବିଖ୍ୟାତ ବୈଜ୍ଞାନିକ । ୧୯୩୩ ମସିହାରେ ସେ ନାଜୀମାନଙ୍କ ଦ୍ୱାରା ଜର୍ମାନୀରୁ ତଡ଼ାଖାଇ ଆମେରିକାରେ ବାସ କଲେ । ସେ 'ଥିଓରି ଅଫ ରିଲେଟିଭିଟି'ର ଆବିଷ୍କର୍ତ୍ତା ।

**ଏପିକ୍ୟୁରସ (୩୪୨–୨୭୦ ଖ୍ରୀ.ପୂ.)**

ପ୍ରଖ୍ୟାତ ଗ୍ରୀକ୍ ଦାର୍ଶନିକ । ଏପିକ୍ୟୁରି ଅନ ଦର୍ଶନ ସ୍କୁଲର ପ୍ରତିଷ୍ଠାତା ।

**ୟୁକ୍ଲିଡ୍**

ଜଣେ ଗ୍ରୀକ୍ ଗଣିତଜ୍ଞ । ସେ ଆଲେକଜାଣ୍ଡ୍ରିଆରେ ବାସ କରୁଥିଲେ । ଖ୍ରୀଷ୍ଟ-ପୂର୍ବ ୩୦୦ରେ ସେ ଜ୍ୟାମିତିର ଅଧିକାଂଶ ସୂତ୍ର ଆବିଷ୍କାର କରିଥିଲେ ।

**ଫାହିୟାନ**

ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କ ସମୟରେ ଚୀନରୁ ପ୍ରଥମ ବୌଦ୍ଧଯାତ୍ରୀ ରୂପେ ଫାହିୟାନ ଭାରତ ଆସିଥିଲେ ।

**ମାଇକେଲ ଫ ରାଡେ – ୧୭୯୧–୧୮୬୭**

ଜଣେ ଇଂରେଜ ବୈଜ୍ଞାନିକ । ସେ ବିଦ୍ୟୁତ ପ୍ରବାହ ଓ ଚୁମ୍ବକ ସମ୍ବନ୍ଧରେ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର କରିଥିଲେ । ଏହାଫଳରେ ଆଧୁନିକ ବିଦ୍ୟୁତ ଶିଳ୍ପର ଭିତ୍ତି ସ୍ଥାପିତ ହେଲା । ପ୍ରଥମେ ସେ ରୟାଲ ଇନଷ୍ଟିଚ୍ୟୁସନରେ ସାର୍ ହାମ୍ଫ୍ରେ ଡାଭେଙ୍କର ସହକାରୀ ଥିଲେ ।

**ଫିରଦୌସୀ**

ପାରସ୍ୟର ବିଖ୍ୟାତ କବି । ବିଖ୍ୟାତ 'ସାହନାମା' କାବ୍ୟ ପାଇଁ ସେ ବିଶ୍ୱ ବିଖ୍ୟାତ ।

**ଆଲେକଜାଣ୍ଡର ଫ୍ଲେମିଙ୍ଗ**

ସେ ପେନସିଲିନ ଆବିଷ୍କାର କରି ୧୯୪୫ ମସିହାରେ ଔଷଧ ବିଜ୍ଞାନରେ ନୋବେଲ ପୁରସ୍କାର ପାଇଥିଲେ ।

**ହେନରିଚ ଫକେ**

ହେଲିକପ୍ଟର ନକ୍ସାର ଜନକ । ୧୯୭୯ ମସିହା ମାର୍ଚ୍ଚ ୧ ତାରିଖରେ ବ୍ରିମେନରେ ତାଙ୍କ ମୃତ୍ୟୁ ହେଲା ।

**ଇ-ଏମ୍-ଫର୍ଷ୍ଟର**

ଭାରତ ସମ୍ବନ୍ଧରେ ସୁବିଖ୍ୟାତ ବିଦେଶୀ ଲେଖକ । ୧୯୨୪ ମସିହାରେ 'ଏ ପାସେଜ ଟୁ ଇଣ୍ଡିଆ' ବହି ଲେଖି ସେ ପ୍ରକାଶ କରିଥିଲେ । ଏହାଫଳରେ ୨୩ ବର୍ଷପରେ ବ୍ରିଟେନ ଭାରତକୁ ସ୍ୱାଧୀନତା ଦେବାର ପଥ ସୁଗମ ହୋଇଥିଲା ।

**ବେଂଜାମିନ ଫ୍ରାଙ୍କଲିନ—୧୭୦୬—୧୭୯୦**

ଜଣେ ଆମେରିକାନ ରାଜନୀତିଜ୍ଞ । ଆମେରିକାନ ଡ଼କ୍ଲେରେୟାସନ ଅଫ ଇଣ୍ଡି-ପେଣ୍ଡେନ୍ସ ଲେଖିବାରେ ସେ ସାହାଯ୍ୟ କରିଥିଲେ । ବୈଜ୍ଞାନିକ ହିସାବରେ ସେ ବିଦ୍ୟୁତ କ୍ଷେତ୍ରରେ କେତେକ ଅନ୍ୟ ଆବିଷ୍କାର ସହିତ ବଜ୍ର ବିଦ୍ୟୁତ କଣ୍ଡକ୍ଟର ଉଦ୍ଭାବନ କରିଥିଲେ ।

**ଏଫ୍-ଡବଲ୍ୟୁ ଅଗଷ୍ଟ ଫ୍ରୋବେଲ—୧୭୮୨ ୧୮୫୨**

ଶିଶୁ ଶିକ୍ଷାରେ ସେ କିଣ୍ଡାର ଗାର୍ଟେନ ପଦ୍ଧତି ଆବିଷ୍କାର ଓ ପ୍ରଚଳନ କରିଥିଲେ ।

**ମେଜର ୟୁରି ଗାଗାରିନ**

ସେ ରୁଷର ମହାକାଶ ବିଜ୍ଞାନୀ ଓ ପୃଥିବୀର ପ୍ରଥମ ମହାକାଶ ଯାତ୍ରୀ । ସେ ଭୋଷ୍ଟକ—୧ ରେ ୧୯୬୧ ମହିହା ଏପ୍ରିଲ ୧୨ ତାରିଖରେ ମହାକାଶ ଯାତ୍ରା କରି ପୃଥିବୀକୁ ନିରାପଦରେ ଫେରି ଆସିଥିଲେ । ଏକ ବିମାନ ଦୁର୍ଘଟଣାରେ ତାଙ୍କର ମୃତ୍ୟୁ ହେଲା ।

**ଗାଲିଲିଓ—୧୫୬୪—୧୬୪୨**

ପ୍ରଖ୍ୟାତ ଇଟାଲୀୟ ବୈଜ୍ଞାନିକ ଓ ଗଣିତ ପ୍ରଫେସର । ସେ ଦୂରବୀକ୍ଷଣ ଯନ୍ତ୍ର ଆବିଷ୍କାର କରିଥିଲେ ।

**ଭାସ୍କୋଡାଗାମା ।**

ବିଖ୍ୟାତ ପର୍ତ୍ତୁଗୀଜ ନାବିକ । ସେ ୧୪୯୮ ଖ୍ରୀଷ୍ଟାବ୍ଦରେ ଉତ୍ତମାଶା ଅନ୍ତରୀପ ଦେଇ ଭାରତକୁ ଜଳପଥ ଆବିଷ୍କାର କରିଥିଲେ । ଏହି ଆବିଷ୍କାର ପରେ ପର୍ତ୍ତୁଗୀଜ-

ମାନେ ସର୍ବପ୍ରଥମ ୟୁରୋପୀୟ ରୂପେ ଭାରତକୁ ଆସି ଏଠାରେ ଉପନିବେଶ ସ୍ଥାପନ କଲେ ।

**ମହାତ୍ମା ଗାନ୍ଧି** – ୧୮୬୯-୧୯୪୮

ଜାତିର ଜନକ । ଭାରତୀୟ ସ୍ୱାଧୀନତା ସଂଗ୍ରାମର ନେତା । ଅହିଂସା ଆନ୍ଦୋଳନର ଉଦ୍‌ଭାବକ । ସେ ନାଥୁରାମ ଗଡ୍‌ସେଙ୍କ ଦ୍ୱାରା ନିହତ ହେଲେ ।

**ଜି ଗାରିବାଲ୍‌ଡି**—୧୮୦୭-୧୮୮୨

ଜଣେ ବିଖ୍ୟାତ ଇଟାଲୀୟ ସୈନିକ । ଇଟାଲୀର ମୁକ୍ତି ସଂଗ୍ରାମର ପୁରୋଧା । 'ରେଡ୍ ସାର୍ଟସ' ନାମକ ସ୍ୱେଚ୍ଛାସେବକ ସେନାର ସଂଗଠକ । ସେ ଆଧୁନିକ ଇଟାଲୀର ଜନକ ।

**ମହମ୍ମଦ ଘୋରୀ**—

ଦ୍ୱାଦଶ ଶତାବ୍ଦୀରେ ସେ ଭାରତରେ ମୁସଲମାନ ଶାସନର ଭିତ୍ତି ସ୍ଥାପନ କରିଥିଲେ । ୧୧୯୧ ଖ୍ରୀଷ୍ଟାବ୍ଦରେ ସେ ଥାନେଶ୍ୱର ଯୁଦ୍ଧରେ ପୃଥ୍ୱୀରାଜଙ୍କଠାରୁ ପରାଜିତ ହେଲେ । ୧୧୯୨ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ଯୁଦ୍ଧରେ ସେ ପୃଥ୍ୱୀରାଜଙ୍କୁ ପରାସ୍ତକଲେ । ସେହି ଦିନଠାରୁ ଭାରତରେ ସ୍ଥାୟୀ ମୁସଲମାନ ଶାସନ ଚାଲିଲା ।

**ଅରବିନ୍ଦ ଘୋଷ**

ମହାନ ବିପ୍ଳବୀ । ପରେ ସେ ଜଣେ ଯୋଗୀ ଓ ଦାର୍ଶନିକ ରୂପେ ଖ୍ୟାତି ଲାଭକଲେ । ପଣ୍ଡିଚେରୀରେ ସେ ବିଶ୍ୱବିଖ୍ୟାତ ଆଶ୍ରମ ପ୍ରତିଷ୍ଠା କରିଥିଲେ । ତାଙ୍କର ପ୍ରସିଦ୍ଧ ପୁସ୍ତକ—'ଲାଇଫ ଲିଭାଇନ' ଓ 'ଏସେଜ ଅନ ଗୀତା' ।

**ଭି-ଭି-ଗିରି**

ଭାରତର ଚତୁର୍ଥ ରାଷ୍ଟ୍ରପତି । ୧୯୮୦ ମସିହା ଜୁନ ୨୪ ତାରିଖରେ ୮୫ ବର୍ଷ ବୟସରେ ମାଡ୍ରାଜରେ ମୃତ୍ୟୁବରଣ । ଭାରତରତ୍ନ ଉପାଧିଦ୍ୱାରା ସମ୍ମାନିତ । ଜଣେ ପ୍ରଖ୍ୟାତ ସମାଜ ସଂଗଠକ । ବୈଧାନିକ, ପାର୍ଲିଆମେଣ୍ଟାରିଆନ, କୂଟନୀତିଜ୍ଞ ଓ ରାଜନୀତିଜ୍ଞ ।

**ଗୋପାଳକୃଷ୍ଣ ଗୋଖଲେ** (୧୮୬୬ – ୧୯୧୫)

ଜଣେ ବିଖ୍ୟାତ ଭାରତୀୟ ନେତା । ଗାନ୍ଧିଙ୍କର ରାଜନୀତି ଗୁରୁ । ୧୯୦୨ ମସିହାରେ ସେ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ଥିଲେ । ସେ ଭାରତ ସେବକ ସମାଜର ପ୍ରତିଷ୍ଠାତା ।

**ଏମ-ଏସ-ଗୋଲ୍‌ୱାଲକର** (୧୯୦୬ – ୧୯୭୩)

ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘର ସାର ସଂଘ ଚାଳକ ଓ ପୂଜ୍ୟନେତା ।

**ଚି-ଗୁଏଭାରା**

ସେ କମ୍ୟୁନିଷ୍ଟ ଗରିଲା ବିଦ୍ରୋହୀଙ୍କର ନେତା । ପୂର୍ବେ କ୍ୟୁବାର ରାଷ୍ଟ୍ରପତି କାଷ୍ଟ୍ରୋଙ୍କର କମରେଡ ଥିଲେ । ଲାଟିନ ଆମେରିକାନ ଦେଶଗୁଡ଼ିକରେ ବିଦ୍ରୋହ

ସୃଷ୍ଟି କରିବାକୁ ଚେଷ୍ଟା କରୁଥିବା ସମୟରେ ୧୯୬୭ ମସିହାରେ ବଲିଭିଆ ସୈନ୍ୟଙ୍କ ଗୁଳିରେ ନିହତ ହୋଇଲେ ।

**ଗୁରୁ ଅର୍ଜୁନ ଦାସ**

ଶିଖମାନଙ୍କର ତୃତୀୟ ଗୁରୁ । ପ୍ରତ୍ୟେକ ଶିଖ ତାଙ୍କୁ ଶ୍ରଦ୍ଧା ଓ ଭକ୍ତି କରନ୍ତି ।

**ଗୁରୁ ଶ୍ରୀ ନାରାୟଣ**

୧୪ଶ ଶତାବ୍ଦୀର ପ୍ରଖ୍ୟାତ ଭାରତୀୟ ଗଣିତଜ୍ଞ, ଗଣିତ କୌମୁଦୀ ନାମକ ପ୍ରସିଦ୍ଧ ବହି ସେ ଲେଖିଯାଇଛନ୍ତି । ୧୭ଶ ଶତାବ୍ଦୀରେ ଫ୍ରାନ୍ସର ଲୋକେ ତାଙ୍କର ଗଣିତ ସୂତ୍ରକୁ କପିକାରୀ କରିଥିଲେ ।

**ଏମ୍-ଡାଗ୍ ହାମର ଶୋଲ୍ଡ (୧୯୦୫—୧୯୬୧)**

ସୁଇଡ଼େନର ବିଖ୍ୟାତ ରାଜନୀତିଜ୍ଞ, ୧୯୫୩ ମସିହାରେ ଜାତିସଂଘର ସେକ୍ରେଟେରୀ ଜେନେରାଲ ହେଲେ । ୧୯୬୧ ମସିହାରେ ବିମାନରେ କଙ୍ଗୋ ଯାତ୍ରା କରୁଥିବା ସମୟରେ ବିମାନ ଦୁର୍ଘଟଣାରେ ତାଙ୍କର ମୃତ୍ୟୁ ହେଲା । ମୃତ୍ୟୁପରେ ଶାନ୍ତିପାଇଁ ତାଙ୍କୁ ନୋବେଲ ପୁରସ୍କାର ଦିଆଯାଇଥିଲା ।

**ହରିଶେଣା**

ସମୁଦ୍ର ଗୁପ୍ତଙ୍କର ରାଜ ସଭାର କବି । ସେ ପ୍ରସିଦ୍ଧ ଆଲ୍ଲାହାବାଦ ଲୌହସ୍ତମ୍ଭ ଲେଖିଥିଲେ ।

**ହର୍ଷବର୍ଦ୍ଧନ (୬୦୬—୬୪୭)**

ସପ୍ତମ ଶତାବ୍ଦୀରେ ଯଶ ଓ ଖ୍ୟାତିର ସହିତ ଉତ୍ତର ଭାରତ ଶାସନ କରିଥିଲେ । ଦ୍ୱିତୀୟ ପୁଲକେଶୀ (ଚାଲୁକ୍ୟ) ଓ ନରସିଂହ ବର୍ମା (ପଲ୍ଲବ) ତାଙ୍କର ସମସାମୟିକ । ସେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ ଓ ଚୀନ ପରିବ୍ରାଜକ ହୁଏନସାଙ୍ଗଙ୍କୁ ନିଜ ରାଜସଭାରେ ସ୍ଥାନ ଦେଇଥିଲେ ।

**ଆଡଲ୍ଫ ହିଟଲର (୧୮୮୯—୧୯୪୫)**

ବିଶ୍ୱବିଖ୍ୟାତ ଜର୍ମାନ ଡିକ୍ଟେଟର । ସେ ଅଷ୍ଟ୍ରିୟାରେ ଜନ୍ମ ଗ୍ରହଣ କରିଥିଲେ । ସେ ନାଜୀଦଳର ନେତୃତ୍ୱ ନେଇ ୧୯୩୩ ମସିହାରେ ଜର୍ମାନୀର ଚାନସେଲର ହେଲେ । ସେ ଅଷ୍ଟ୍ରିଆ ଓ ଚେକୋସ୍ଲୋଭାକିୟା ଆକ୍ରମଣ କରିବା ପାଇଁ ଆଦେଶ ଦେଇଥିଲେ । ୧୯୩୯ ମସିହାରେ ସେ ପୋଲାଣ୍ଡ ଆକ୍ରମଣ କରିବାର ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ୧୯୪୫ ମସିହାରେ ସେ ବର୍ଲିନରେ ଆତ୍ମହତ୍ୟା କଲେ । 'ମେନକାମ୍ପ' ତାଙ୍କ ରଚିତ ପ୍ରସିଦ୍ଧ ପୁସ୍ତକ ।

**ହୋମର**

ପ୍ରସିଦ୍ଧ ଗ୍ରୀକ୍ କବି । ସେ ବିଖ୍ୟାତ 'ଦି ଇଲିୟାଡ଼' ଓ 'ଦି ଓଡେଶୀ'ର ଲେଖକ ।

**ଆଲେନ ଅକ୍ଟ ଭିୟାନ ହ୍ୟୁମ**

୧୮୮୫ ଖ୍ରୀଷ୍ଟାବ୍ଦରେ ଭାରତୀୟ ଜାତୀୟ କଂଗ୍ରେସର ପ୍ରତିଷ୍ଠାତା । ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ସେ ଭାରତୀୟମାନଙ୍କର ପ୍ରକୃତ ଉଦ୍ଦେଶ୍ୟ ବୁଝିପାରି ଥିଲେ ।

**କଲ୍ୟାଣମଲ୍ଲ**

ଦୁଃସାହସୀ ରାଜପୁତ ସେନାପତି । ଚିତୋର ଦୁର୍ଗ ଅଧିକାର କରିବା ପାଇଁ ଆକବରଙ୍କର ଶତଚେଷ୍ଟାକୁ ସେ ପଣ୍ଡ କରି ଦେଇଥିଲେ ।

**କବୀର ଦାସ**

ଭାରତୀୟ ସାଧୁ ଓ କବି । ସେ ନିର୍ଗୁଣ ଭକ୍ତିର ଉପାସକ । ସେ ଈଶ୍ୱର ଓ ସର୍ବଧର୍ମ ସମନ୍ୱୟରେ ବିଶ୍ୱାସ କରୁଥିଲେ । ତାଙ୍କର ପ୍ରସିଦ୍ଧ ରଚନା ମଧ୍ୟରେ 'କବୀର ବଚନାମୃତ' 'କବୀର ବୀଜକ' ଓ 'ସାକ୍ଷୀ' ଅନ୍ୟତମ ।

**କଲ୍ହଣ**

ସେ ଏକାଦଶ ଶତାବ୍ଦୀର ଜଣେ ବିଖ୍ୟାତ କାଶ୍ମୀରୀ କବି । ସେ ପ୍ରସିଦ୍ଧ ରାଜତରଙ୍ଗିଣୀ'ର ରଚୟିତା । ଏ ବହିରେ ୧୦ମ ଶତାବ୍ଦୀ ପର୍ଯ୍ୟନ୍ତ କାଶ୍ମୀରର ଇତିହାସ ଅଛି ।

## ବିଶ୍ୱ ଇତିହାସର ବର୍ଷପଞ୍ଜି

**ଖ୍ରୀ.ପୂର୍ବ**

୭୭୬—ଗ୍ରୀସରେ ପ୍ରଥମ ଅଲିମ୍ପିକ ଖେଳ ।

୪୯୦—ମାରଥନ ଯୁଦ୍ଧ । ପର୍ସିୟାନ ସେନା ଗ୍ରୀକ ସେନାଦ୍ୱାରା ପରାସ୍ତ

୩୯୯—ଗ୍ରୀକ୍ ଦାର୍ଶନିକ ସକ୍ରେଟୀସଙ୍କର ମୃତ୍ୟୁ ।

୩୨୮—ଆଲେକଜାଣ୍ଡରଙ୍କର ମୃତ୍ୟୁ ।

୨୨୧—ଚୀନ ପ୍ରାଚୀର ସମ୍ପୂର୍ଣ୍ଣ ।

**ଖ୍ରୀଷ୍ଟାବ୍ଦ**

୩୩—ଯୀଶୁ କ୍ରୁଶବିଦ୍ଧ

୫୬୯—ମକ୍କାରେ ମହମ୍ମଦଙ୍କର ଜନ୍ମ ।

୬୦୦—ରୋମାନ ସାମ୍ରାଜ୍ୟର ପତନ ।

୧୨୧୩—ଚେଙ୍ଗିଜ ଖାଁଙ୍କର ଚୀନ ବିଜୟ ।

୧୨୧୫—ମାଗ୍ନାକାର୍ଟା ସ୍ୱାକ୍ଷରିତ ।

୧୪୨୧—ସାହସୀ ବାଳିକା ଜୋଆନ ଅଫ ଆର୍କଙ୍କ ଦ୍ୱାରା ଓର୍ଲିୟାନସରେ ବ୍ରିଟାଶ ସେନା ପରାସ୍ତ ।

୧୪୯୨—କଲମ୍ବସଙ୍କର ଆମେରିକା ଆବିଷ୍କାର ।

୧୪୯୮—ଭସ୍କୋ-ଡାଗାମାଙ୍କ ଦ୍ୱାରା ଭାରତକୁ ଜଳପଥ ଆବିଷ୍କୃତ ।

୧୬୦୦—ଭାରତରେ ଇଷ୍ଟଇଣ୍ଡିଆ କମ୍ପାନୀ ପ୍ରତିଷ୍ଠିତ ।

୧୭୭୬—ଆମେରିକାର ସ୍ୱାଧୀନତା ଘୋଷଣା ।

୧୭୮୯—ଫ୍ରାନ୍‌ସ ବିପ୍ଳବ । ଆମେରିକାର ପ୍ରଥମ ରାଷ୍ଟ୍ରପତି ରୂପେ ଜର୍ଜ ୱାସିଂଟନ ନିର୍ବାଚିତ ।

୧୮୦୫—ଟ୍ରାଫଲଗାର ଯୁଦ୍ଧ । ନେଲସନଙ୍କର ମୃତ୍ୟୁ ।

୧୮୧୫—ୱାଟରଲୁ ଯୁଦ୍ଧ । ନେପୋଲିୟନ ପରାସ୍ତ ଓ ସେଣ୍ଟ ହେଲେନା ଦ୍ୱୀପକୁ ନିର୍ବାସିତ ।

୧୮୨୧—ନେପୋଲିୟନଙ୍କର ମୃତ୍ୟୁ ।

୧୮୬୫—ଆବ୍ରାହାମ ଲିଙ୍କନ ଆତତାୟୀ ଦ୍ୱାରା ନିହତ ।

୧୮୯୨—ବୋଏର ଯୁଦ୍ଧ ଆରମ୍ଭ ।

୧୯୧୧—ଚୀନ ବିପ୍ଳବ । ଆମୁଣ୍ଡସନଙ୍କର ଦକ୍ଷିଣ ମେରୁ ବିଜୟ ।

୧୯୧୪—ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ।

୧୯୧୭—ରୁଷ ବିପ୍ଳବ ଓ ରୁଷରେ କମ୍ୟୁନିଷ୍ଟ ଶାସନ ଆରମ୍ଭ ।

୧୯୧୮—ପ୍ରଥମ ବିଶ୍ୱଯୁଦ୍ଧ ଶେଷ । ପ୍ରେସିଡେଣ୍ଟ ଉଇଲସନଙ୍କର ୧୪ ଦଫା ଶାନ୍ତି ପ୍ରସ୍ତାବ ।

୧୯୧୯—ଭର୍ସିଲେସ ସନ୍ଧି ।

୧୯୨୦—ଲିଗ ଅଫ ନେସନ ଗଠନ ।

୧୯୩୩—ହିଟଲର ଜର୍ମାନୀର ଚାନ୍‌ସେଲର ନିର୍ବାଚିତ ।

୧୯୩୯—ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ।

୧୯୪୫—ହିରୋସୀମା ଉପରେ ପ୍ରଥମ ପରମାଣୁ ବୋମା ନିକ୍ଷେପ । ଦ୍ୱୀତୀୟ ବିଶ୍ୱଯୁଦ୍ଧ ଶେଷ । ଜାତିସଂଘ ଗଠନ ।

୧୯୫୩—ତେନଜିଂ ଓ ହିଲାରୀଙ୍କ ଦ୍ୱାରା ମାଉଣ୍ଟ ଏଭରେଷ୍ଟ ବିଜୟ ।

୧୯୫୪—ଇଣ୍ଡୋଚୀନ ଓ କୋରିଆ ଉପରେ ଜେନେଭା ସମ୍ମିଳନୀ ।

୧୯୫୬—ସୁଏଜ କେନାଲ ଜାତୀୟକରଣ । ଇଜିପ୍ଟ ଉପରେ ଆଙ୍ଗ୍ଲୋଫ୍ରେଞ୍ଚ, ଇସ୍ରାୟଲୀ ଆକ୍ରମଣ । ୧୯୫୭—ମାଲୟ ଓ ଘାନାର ସ୍ୱାଧୀନତା ଲାଭ । କକ୍ଷକୁ ରୁଷର ପ୍ରଥମ ସ୍ପୁଟ୍‌ନିକ ପ୍ରେରଣ ।

୧୯୫୮—ସିରିୟା ଓ ଇଜିପ୍ଟର ମିଶ୍ରଣରେ ୟୁନାଇଟେଡ଼ ଆରବ ରିପବ୍ଳିକ ଗଠନ ।

୧୯୫୯—ବର୍ଲିନ ସମସ୍ୟା ଉପରେ ଜେନେଭା ସମ୍ମିଳନୀ ।

୧୯୬୧—ଏପ୍ରିଲ—୧୨ରେ ରୁଷର ପ୍ରଥମ ମହାକାଶ ଯାତ୍ରୀ ୟୁରି ଗାଗାରିନଙ୍କୁ ମହାକାଶକୁ ପ୍ରେରଣ ।

୧୯୬୩—ମାଲେସିଆ ଗଠନ ।

୧୯୬୫—ପାକିସ୍ତାନର କଚ୍ଛ ଓ କାଶ୍ମୀର ଆକ୍ରମଣ ।

୧୯୬୬—ତାସକେଣ୍ଟ ସନ୍ଧି ଓ ଲାଲ୍ ବାହାଦୁର ଶାସ୍ତ୍ରୀଙ୍କର ମୃତ୍ୟୁ ।

୧୯୬୬—ଚୀନରେ ସାଂସ୍କୃତିକ ବିପ୍ଳବ । ଚୀନର ହାଇଡ୍ରୋଜେନ ବୋମା ପରୀକ୍ଷା ।

୧୯୬୯—ଆମେରିକା ମହାକାଶ ଯାତ୍ରୀଙ୍କର ଚନ୍ଦ୍ରରେ ଅବତରଣ ।

୧୯୭୧—ବାଙ୍ଗଲା ଦେଶର ଜନ୍ମ । ଭାରତ ପାକିସ୍ତାନ ସଂଘର୍ଷ ।

୧୯୭୩—ଭିଏଟନାମ ଚୁକ୍ତି । ୱାଟର ଗେଟ କଳଙ୍କ । ଆମେରିକାର ରାଷ୍ଟ୍ରପତି ରୂପେ ନିକ୍ସନ ପୁନଃ ନିର୍ବାଚିତ ।

୧୯୭୪—ୱାଟର ଗେଟ ଘଟଣା ଉପରେ ନିକସନଙ୍କର ଇସ୍ତଫା । ଜେରାଲ୍ଡ ଫୋର୍ଡଙ୍କର ଆମେରିକାର ରାଷ୍ଟ୍ରପତି ଦାୟିତ୍ୱ ଗ୍ରହଣ ।

୧୯୭୫—ଉତ୍ତର ଭିଏତନାମ ପାଖରେ ଦକ୍ଷିଣ ଭିଏତନାମର ଆତ୍ମସମର୍ପଣ । ଆପୋଲୋ ଓ ସୋୟୁଜର ଯୁଗ୍ମ ପରୀକ୍ଷାମୂଳକ ଉଡ୍‌ଡୟନ । ହେଲିସିଙ୍କି ଘୋଷଣା ସ୍ୱାକ୍ଷରିତ । ଆଙ୍ଗୋଲା, ମୋଜାମ୍ବିକ ଓ ସୁରିନାମର ସ୍ୱାଧୀନତା ଲାଭ ।

୧୯୭୬—ଅଗଷ୍ଟ ଓ ସେପ୍ଟେମ୍ବର ମାସରେ ଯଥାକ୍ରମେ ଭାଇକିଙ୍ଗ ୧ ଓ ୨ର ମଙ୍ଗଳ ଗ୍ରହରେ ଅବତରଣ ।

୧୯୭୭—ପାକିସ୍ତାନର ପ୍ରଧାନ ମନ୍ତ୍ରୀରୂପେ ଭୁଟୋ ନିର୍ବାଚିତ । ପରେ କ୍ଷମତା-ଚ୍ୟୁତ ଓ ବନ୍ଦୀ ।

୧୯୭୮—ଭୁଟୋଙ୍କୁ ମୃତ୍ୟୁ ଦଣ୍ଡାଦେଶ । ଦ୍ୱିତୀୟ ଜନ ପଲ, ପୋପ ରୂପେ ନିର୍ବାଚିତ ।

୧୯୭୯—କମ୍ୟୁନିଷ୍ଟ ଚୀନକୁ ଆମେରିକାର ସ୍ୱୀକୃତି । ବ୍ରିଟେନର ପ୍ରଥମ ମହିଳା ପ୍ରଧାନ ମନ୍ତ୍ରୀରୂପେ ମାର୍ଗାରେଟ ଥାଚର ନିର୍ବାଚିତ ।

୧୯୮୦—ମସ୍କୋ ଅଲିମ୍ପିକକୁ ଆମେରିକାର ବାସନ୍ଦ । ଇରାନର ଶାହଙ୍କର ମୃତ୍ୟୁ । ୟାହିୟା ଖାଁଙ୍କର ମୃତ୍ୟୁ । ସୋଭିଏଟ ପ୍ରେସିଡେଣ୍ଟ ବ୍ରେଜନେଭଙ୍କର ଭାରତ ଆଗମନ ।

୧୯୮୧—ଆମେରିକୀୟ ଅଟକବନ୍ଦୀମାନଙ୍କୁ ଇରାନର ମୁକ୍ତିଦାନ । ଆମେରିକାର ରାଷ୍ଟ୍ରପତି ରୂପେ ରିଗାନଙ୍କର ଦାୟିତ୍ୱ ଗ୍ରହଣ । ନୂଆ ଦିଲ୍ଲୀରେ ନିରପେକ୍ଷ ଦେଶଗୁଡ଼ିକର ବୈଦେଶିକ ସମ୍ମିଳନୀ । ଆଫଗାନିସ୍ଥାନରେ ପୁଣି ୨୦ ହଜାର ରୁଷ ସୈନ୍ୟଙ୍କର ପ୍ରବେଶ । ନେପାଳର ଜାତୀୟ ପଞ୍ଚାୟତ ନିର୍ବାଚନରେ ସୂର୍ଯ୍ୟ ବାହାଦୁର ଥାପାଙ୍କର

ବିଫଳ । ପାକିସ୍ତାନକୁ ଏଫ—୧୬ ବିମାନ ଦେବାପାଇଁ ଆମେରିକା ସମ୍ମତ । ବ୍ରିଟେନରେ ସାମ୍ପ୍ରଦାୟିକ ଦଙ୍ଗା, ଶକ୍ତିର ବିକଳ୍ପ ବାହାର କରିବା ପାଇଁ ଜାତି ସଂଘ ବିଶ୍ୱ ସମ୍ମିଳନୀ । ଇରାନର ନୂତନ ରାଷ୍ଟ୍ରପତି ରୂପେ ଖୁମେନି ନିର୍ବାଚିତ । ଅନୱାର ସାଦତ, ଅତତାୟୀ ଦ୍ୱାରା ନିହତ । ଏମ-ସି-ସି-ର ଭାରତ ଗସ୍ତ । ପୋଲାଣ୍ଡରେ ସୈନିକ ଶାସନ ।

୧୯୮୨—ଜାତି ସଂଘର ନୂତନ ସେକ୍ରେଟେରୀ ଜେନେରାଲଙ୍କର ଦାୟିତ୍ୱ ଗ୍ରହଣ ।

**ଭାରତରେ—ବୃହତ୍ତମ, କ୍ଷୁଦ୍ରତମ, ଉଚ୍ଚତମ ଓ ଦୀର୍ଘତମ**

ଉଚ୍ଚତମ ଶୃଙ୍ଗ—କାଞ୍ଚନଜଙ୍ଘା

ଦୀର୍ଘତମ ଜନବହୁଳ ସହର—କଲିକତା (୭୧ଲକ୍ଷ)

ବୃହତ୍ତମ ହ୍ରଦ—ଉଲାର (କାଶ୍ମୀର)

ଦୀର୍ଘତମ ଇଲେକ୍‌ଟ୍ରିକ ଟ୍ରେନ—କଲିକତାରୁ ଦିଲ୍ଲୀ

ବୃହତ୍ତମ ରାଜ୍ୟ—ମଧ୍ୟପ୍ରଦେଶ

ଜନବହୁଳ ରାଜ୍ୟ—ଉତ୍ତର ପ୍ରଦେଶ

ଉଚ୍ଚତମ ସେତୁ—ଚମ୍ବଲ ପୋଲ

ଉଚ୍ଚତମ ଗେଟୱେ—ବୁଲନ୍ଦ ଦରୱାଜା ଫତେପୁର ସିକ୍ରୀ—୧୭୬ ଫୁଟ

ସର୍ବୋଚ୍ଚ ବୃଷ୍ଟି—ଚେରାପୁଂଜି (ମେଘାଳୟ)

ଉଚ୍ଚତମ ପ୍ରତିମୂର୍ତ୍ତି—ଗୋମତେଶ୍ୱର ପ୍ରତିମୂର୍ତ୍ତି (କର୍ଣ୍ଣାଟକ) ୧୫୬ ଫୁଟ ଉଚ୍ଚ

ବୃହତ୍ତମ ଟନେଲ—ଜହରଟନେଲ (ଜାମ୍ମୁ କାଶ୍ମୀର) ୧୧ କିଲୋମିଟାର ବନିହାଲ ପାସ୍

ବୃହତ୍ତମ ଷ୍ଟାଡିୟମ—କଲିକତା

ସର୍ବାଧିକ ଜନସଂଖ୍ୟା—କେରଳ (ପ୍ରତି ବର୍ଗ କିଲୋମିଟର—୫୪୯) ପଶ୍ଚିମ ବଙ୍ଗ—୫୦୭, ବିହାର—୩୨୪

ବୃହତ୍ତମ ପଶୁଶାଳା—ଜୁଲଜିକାଲ ଗାର୍ଡନ—ଆଲିପୁର—କଲିକତା

ବୃହତ୍ତମ ପଥ—ଗ୍ରାଣ୍ଡ ଟ୍ରଙ୍କରୋଡ୍ (୧୫୦୦ ମାଇଲ)

ବୃହତ୍ତମ ପାର୍ବତ୍ୟମନ୍ଦିର (କୈଳାସ ମନ୍ଦିର)—ଏଲୋରା, ମହାରାଷ୍ଟ୍ର

ଉଚ୍ଚତମ ଟାୱାର—କୁତବ ମୀନାର, ଦିଲ୍ଲୀ

ବୃହତ୍ତମ ଗମ୍ବୁଜ—ଗୋଲ ଗମ୍ବୁଜ, ବିଜାପୁର (କର୍ଣ୍ଣାଟକ)

ବୃହତ୍ତମ ମସଜିଦ—ଜୁମା ମସଜିଦ, ଦିଲ୍ଲୀ

ବୃହତ୍ତମ ରେଳପୋଲ—ଡେହରୀ—ସୋନ ପୋଲ—ବିହାର

ଉଚ୍ଚତମ ବନ୍ଧ—ଭକ୍ରାବନ୍ଧ

କ୍ଷୁଦ୍ରତମ ରାଜ୍ୟ—ସିକ୍କିମ

ସର୍ବାଳ୍ପ ଜନସଂଖ୍ୟା – ସିକ୍‌କୀମ
ବୃହତ୍ତମ ମରୁଭୂମି – ଥାର (ରାଜସ୍ଥାନ)
ବୃହତ୍ତମ କୃତ୍ରିମ ହ୍ରଦ – ଗୋବିନ୍ଦ ସାଗର (ଭାକ୍ରା)
ବୃହତ୍ତର କରିଡର—ରମେଶ୍ୱରମ ମନ୍ଦର କରିଡର (୪୦୦୦ ଫୁଟ ଲମ୍ବ)
ବୃହତ୍ତମ ପଶୁମେଳା ସୋନପୁର ମେଳା (ବିହାର)

## ପୃଥିବୀର ବୃହତ୍ତମ, ଉଚ୍ଚତମ, କ୍ଷୁଦ୍ରତମ

ପୃଥିବୀର ବୃହତ୍ତମ ସେତୁ – ସାନଫ୍ରାନ୍‌ସିସକୋ—୮ ମାଇଲ—ଓକଲାଣ୍ଡ ସେତୁ

ସର୍ବାଧିକ ଜନବହୁଳ ସହର—ସାଂଘାଇ (୧୦, ୮୨୦, ୨୦୦)
ଉଚ୍ଚତମ ସହର—ୱେନ ଚୁଆନ (ଚୀନ)
କ୍ଷୁଦ୍ରତମ ମହାଦେଶ – ଅଷ୍ଟ୍ରେଲିୟା
ବୃହତ୍ତମ ଦେଶ—ଇଉ.ଏସ.ଏସ ଆର (୮.୪ ନିୟୁତ ବର୍ଗ ମାଇଲ)
ଉଚ୍ଚତମ ଦେଶ – ତିବ୍‌ବତ
ବୃହତ୍ତମ ଡେଲ୍‌ଟା—ସୁନ୍ଦର ବନ (ଭରତ)
ବୃହତ୍ତମ ମରୁଭୂମି—ସାହାରା ।
ଉଚ୍ଚତମ ବନ୍ଧ – ଭକ୍ରା ନଙ୍ଗଲ (ପଞ୍ଜାବ)
ବୃହତ୍ତମ ସେଚ ସଂସ୍ଥା—ଲୟଡ ବାରେଜ—ସୁକ୍କୁର – (ପାକିସ୍ତାନ)
ବୃହତ୍ତମ ଦ୍ୱୀପ – ଗ୍ରୀନଲାଣ୍ଡ
ଉଚ୍ଚତମ ପର୍ବତ ଶୃଙ୍ଗ—ମାଉଣ୍ଟ ଏଭରେଷ୍ଟ – ନେପାଳ – ୨୯୦୨୮ ଫୁଟ ।
ବୃହତ୍ତମ ମ୍ୟୁଜିୟମ—ବ୍ରିଟିଶ ମ୍ୟୁଜିୟମ (ଲଣ୍ଡନ)
ବୃହତ୍ତମ ପାର୍କ – ୟଲୋଷ୍ଟୋନ ନ୍ୟାସନାଲ ପାର୍କ—(ୟୁ ଏସ.ଏ.)
ଦୀର୍ଘତମ ପେନିନସୁଲ – ଭରତ
ସର୍ବାଧି ଜନସଂଖ୍ୟା—ଚୀନ
ଦୀର୍ଘତମ ରେଲୱେ ପ୍ଲାଟଫର୍ମ—ଷ୍ଟୋରଭିକ (ସୁଇଡେନ)
ବୃହତ୍ତମ ନଦୀ—ଆମେଜନ
ହିମତମ ଅଞ୍ଚଳ – ସାଇବେରିୟା
ବୃହତ୍ତମ ପ୍ରତିମୂର୍ତ୍ତି – ଷ୍ଟାଚୁ ଅଫ ଲିବାର୍ଟି (ନ୍ୟୁୟର୍କ)
ବୃହତ୍ତମ ପ୍ରାଚୀର – ଚୀନର ପ୍ରାଚୀର
ଉଚ୍ଚତମ ଜଳପ୍ରପାତ – ୱେନଜୁଏଲାର ଜଳପ୍ରପାତ – ୫ରୁ ୬ ହଜାର ଫୁଟ ଉଚ୍ଚ ।
ବୃହତ୍ତମ ପଶୁଶାଳା—କ୍ରୁମାର ନ୍ୟାସନାଲ ପାର୍କ – ଦକ୍ଷିଣ ଆଫ୍ରିକା ।

**ଭାରତର ମୁଖ୍ୟ ଯୁଦ୍ଧ**

ପ୍ରଥମ ପାନିପଥ ଯୁଦ୍ଧ । ୧୫୨୬ ମସିହାରେ ବାବର ଇବ୍ରାହିମ ଲୋଦୀଙ୍କୁ ପରାସ୍ତ କରି ଭାରତରେ ମୋଗଲ ସାମ୍ରାଜ୍ୟର ଭିତ୍ତି ସ୍ଥାପନ କଲେ ।

ଦ୍ୱିତୀୟ ପାନିପଥ ଯୁଦ୍ଧ—୧୫୫୬ । ଆକବରଙ୍କ ଦ୍ୱାରା ହିମୁ ପରାସ୍ତ ।

ହଳଦୀ ଘାଟି ଯୁଦ୍ଧ—୧୫୭୬—ରାଣା । ପ୍ରତାପଙ୍କ ବିରୁଦ୍ଧରେ ଆକବରଙ୍କର ଯୁଦ୍ଧ ।

ପଲାସୀ ଯୁଦ୍ଧ—୧୭୫୭—ଲର୍ଡ କ୍ଲାଇଭଙ୍କ ଦ୍ୱାରା ସିରାଜ ଉଦ୍ଦୌଲା ପରାସ୍ତ ।

ତୃତୀୟ ପାନିପଥ ଯୁଦ୍ଧ—୧୭୬୧

ଅହମ୍ମଦ ଶାହ ଆବଦାଲୀଙ୍କ ଦ୍ୱାରା ମରହଟ୍ଟାମାନେ ପରାସ୍ତ ।

ଭାରତ ପାକିସ୍ତାନ ଯୁଦ୍ଧ—୧୯୬୫ ।

ଏ ଯୁଦ୍ଧ ଭାରତ ଓ ପାକିସ୍ତାନ ମଧ୍ୟରେ ହୋଇଥିଲା । ଦୁଇ ଦେଶ ମଧ୍ୟରେ ତାସକେଣ୍ଟରେ ସନ୍ଧି ହେଲା ।

ଭାରତ ପାକିସ୍ତାନ ଯୁଦ୍ଧ—୧୯୭୧ ।

ବାଙ୍ଗଲାଦେଶ ସହିତ ମିଶି ଭାରତୀୟ ସୈନ୍ୟ ଯୁଦ୍ଧ କରିଥିଲେ । ବାଙ୍ଗଲା ଦେଶରେ ପାକିସ୍ତାନ ସୈନ୍ୟ ଆତ୍ମସମର୍ପଣ କଲେ । ଡିସେମ୍ବର ୧୭ ତାରିଖରେ ଯୁଦ୍ଧ ବନ୍ଦହେଲା । ବାଙ୍ଗଲା ଦେଶ ଏକ ସ୍ୱତନ୍ତ୍ର ଦେଶ ରୂପେ ଜନ୍ମନେଲା ।

**ପୃଥିବୀର କେତେକ ମୁଖ୍ୟ ଯୁଦ୍ଧ**

ଟ୍ରାଫାଲଗାର ଯୁଦ୍ଧ—୧୮୦୫ । ନେଲସନଙ୍କ ନେତୃତ୍ୱରେ ବ୍ରିଟେନର ନୌସେନା ଫ୍ରାନ୍ସ ଓ ସ୍ପେନର ମିଳିତ ନୌସେନାକୁ ପରାସ୍ତ କଲେ ।

ଓ୍ୱାଟରଲୁ ଯୁଦ୍ଧ—୧୮୧୫, ଡ୍ୟୁକ ଅଫ ୱେଲିଂଟନଙ୍କର ନେତୃତ୍ୱରେ ବ୍ରିଟିଶ ସେନା ନେପୋଲିୟନଙ୍କୁ ପରାସ୍ତ କଲେ । ଏ ଯୁଦ୍ଧରେ ନେପୋଲିୟନ ବନ୍ଦୀ ହେଲେ । ସେଣ୍ଟ ହେଲେନା ଦ୍ୱୀପରେ ସେ ନିର୍ବାସନ ଦଣ୍ଡ ଭୋଗକରି ଶେଷ ନିଶ୍ୱାସ ତ୍ୟାଗକଲେ ।

**ରୁଷ-ଜାପାନ ଯୁଦ୍ଧ—୧୯୦୫ ।**

ଏ ଯୁଦ୍ଧ ଜପାନ ସାଗର ଯୁଦ୍ଧ ନାମରେ ପ୍ରଖ୍ୟାତ ଜାପାନର ନୌସେନା ରୁଷର ନୌସେନାକୁ ପରାସ୍ତ କରିଥିଲେ ।

**ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪ – ୧୯୧୮)**

ମିତ୍ର ଶକ୍ତି—ବ୍ରିଟେନ, ଫ୍ରାନ୍ସ ଓ ଆମେରିକା ଏ ଯୁଦ୍ଧରେ ଜର୍ମାନୀକୁ ପରାସ୍ତ କରିଥିଲେ ।

**ଦ୍ୱିତୀୟ ବିଶ୍ୱଯୁଦ୍ଧ (୧୯୩୯—୧୯୪୫)**

ଏ ଯୁଦ୍ଧରେ ମିତ୍ର ଶକ୍ତି—ବ୍ରିଟେନ, ଫ୍ରାନ୍ସ ଓ ଆମେରିକା, ଅକ୍ଷଶକ୍ତି—ଜର୍ମାନୀ ଇଟାଲୀ ଓ ଜାପାନକୁ ପରାସ୍ତ କରିଥିଲେ ।

**ଆରବ ଇସ୍ରାଏଲ ଯୁଦ୍ଧ—୧୯୬୭**

ଏ ଯୁଦ୍ଧରେ ଏକ ପକ୍ଷରେ ଇସ୍ରାୟଲ, ଅନ୍ୟ ପକ୍ଷରେ ଇଜିପ୍ଟ ସିରିଆ ଓ ଜୋର୍ଡାନ ଥିଲେ । ଇସ୍ରାୟଲର ବିଜୟ ହେଲା ।

**ଚତୁର୍ଥ ଆରବ ଇସ୍ରାଏଲ ଯୁଦ୍ଧ—୧୯୭୩**

ଏ ଯୁଦ୍ଧ ମୀମାଂସା ପୂର୍ବରୁ ଜେନେରାଲ ଶାନ୍ତି ସମ୍ମିଳନୀର ହସ୍ତକ୍ଷେପରେ ଯୁଦ୍ଧ ବିରତି ଘଟିଲା ।

**ଚୀନ-ଭିଏଟନାମ ଯୁଦ୍ଧ—୧୯୭୯**

ପ୍ରଥମେ ଚୀନ, ଭିଏଟନାମ ଉପରେ ଭୟଙ୍କର ଆକ୍ରମଣ କରି ପରେ ଯୁଦ୍ଧ ବିରତି ଘୋଷଣା କଲା ।

**ଇରାନ-ଇରାକ ଯୁଦ୍ଧ - ୧୯୮୦**

ଏ ଯୁଦ୍ଧ ଏ ପର୍ଯ୍ୟନ୍ତ ଚାଲିଛି ।

**ଇଂରାଜୀ ଭାଷାରେ ଭାରତୀୟ ଲେଖକ**

ଖୁସବନ୍ତ ସିଂହ, ମୁଲକରାଜ ଆନନ୍ଦ, ରବୀନ୍ଦ୍ରନାଥ ଠାକୁର, ଆର, କେ. ନାରାୟଣ, ସରୋଜିନୀ ନାଇଡୁ, ତାରାଶଙ୍କର, ତରୁ ଦତ୍ତ, ଶିବ ନିଓପୋଲ, ଅଶୋକ ରାଇନା, କମଳା ଦାସ, ଫ୍ରାଙ୍କ ମୋରିସ, ନୟନ ତାରା ସେଗଲ, ପି. ଭି. ଆର୍. ରାଓ, ଚମନ ନିହାଲ, ଅନିତା ଦେଶାଇ, ପ୍ରୀତିଶ ନନ୍ଦୀ ।

**ପୃଥିବୀର ତିନି ଅଂଶ**

ପୃଥିବୀ ତିନିଟି ଜୋନରେ ବିଭକ୍ତ । ୧—ଟରିଡ ଜୋନ । ଏହା ଟ୍ରପିକ ଅଫ କ୍ୟାନସର ଓ ଟ୍ରପିକ ଅଫ କ୍ୟାପ୍ରିକର୍ନ ମଧ୍ୟରେ ଅବସ୍ଥିତ । ଏହା ବିଷୁବରେଖାର ଉତ୍ତର ଓ ଦକ୍ଷିଣରେ ୨୩ୀ ଡ଼ିଗ୍ରୀରେ ଅବସ୍ଥିତ । ଏହା ଉଷ୍ଣତମ ଅଞ୍ଚଳ । ଏ ଅଞ୍ଚଳ ଉପରେ ସୂର୍ଯ୍ୟଙ୍କର କିରଣ ସିଧା ପଡ଼େ ।

୨—ଫ୍ରିଜିଡ ଜୋନ । ଏହା ୬୬ୀ ଡ଼ିଗ୍ରୀରେ ଉତ୍ତର ଓ ଦକ୍ଷିଣ ଗୋଲାର୍ଦ୍ଧର ମେରୁ ମଧ୍ୟରେ ଅବସ୍ଥିତ । ଏହା ପୃଥିବୀର ଶୀତଳତମ ଅଞ୍ଚଳ । ଏ ଅଞ୍ଚଳ ଉପରେ ସୂର୍ଯ୍ୟଙ୍କର କିରଣ ପ୍ରାୟ ବର୍ଷସାରା ପଡ଼େ ନାହିଁ ।

୩—ଟେମ୍ପରେଟ ଜୋନ । ଏହା ଟରିଡ ଓ ଫ୍ରିଜିଡ ଜୋନ ମଧ୍ୟରେ ୬୬ୀ ଡିଗ୍ରୀରେ ବିଷୁବରେଖାର ଉତ୍ତର ଓ ଦକ୍ଷିଣରେ ଅବସ୍ଥିତ । ଏ ଅଞ୍ଚଳ ଉପରେ ସୂର୍ଯ୍ୟଙ୍କର କିରଣ ସିଧା ପଡ଼େନାହିଁ ।

**ଅଲମ୍ପିକ ଖେଳ**

ଖ୍ରୀଷ୍ଟପୂର୍ବ ୭୭୬ ରେ ଅଲମ୍ପିକ ଖେଳ ପ୍ରତିଯୋଗିତା ଗ୍ରୀସର ଅଲମ୍ପିଆରେ ଆରମ୍ଭ ହୋଇ ପ୍ରତି ଚାରି ବର୍ଷରେ ଥରେ ଅନୁଷ୍ଠିତ ହେଉଥିଲା । ପୃଥିବୀର ପ୍ରତି ଦେଶର ପ୍ରତିଯୋଗୀମାନଙ୍କ ନିମନ୍ତେ ଏହା ଉନ୍ମୁକ୍ତ । ଏଥିରେ ଘୋଡା ଦୌଡ, ରଥ ଦୌଡ,

କୁସ୍ତି ଓ ଦୌଡ଼ ପ୍ରତିଯୋଗିତା ହେଉଥିଲା । ୩୯୩ ଖ୍ରୀଷ୍ଟାବ୍ଦରେ ଏ ଖେଳ ପ୍ରତିଯୋଗିତା ବନ୍ଦ ହୋଇଗଲା । କିନ୍ତୁ ୧୮୯୬ ଖ୍ରୀଷ୍ଟାବ୍ଦରେ ପୁଣି ଆରମ୍ଭ ହେଲା । କେବଳ ଦୁଇଟି ବିଶ୍ୱଯୁଦ୍ଧ ସମୟ ବ୍ୟତୀତ ଏହା ପ୍ରତି ଚାରି ବର୍ଷରେ ଅନୁଷ୍ଠିତ ହେଉଅଛି । ୧୯୧୨ ଖ୍ରୀଷ୍ଟାବ୍ଦରେ ପ୍ରଥମେ ମହିଳା ପ୍ରତିଯୋଗୀ ଏ ଖେଳ ପ୍ରତିଯୋଗିତାରେ ଅଂଶଗ୍ରହଣ କଲେ ।

**ଗୁରୁତ୍ୱପୂର୍ଣ୍ଣ ଜାତୀୟ ଖେଳରେ ଖେଳାଳୀ ସଂଖ୍ୟା**

| | | | |
|---|---|---|---|
| ବାସ୍କେଟ ବଲ | — ୫ | ହକି | — ୧୧ |
| ବେସ୍ ବଲ | — ୯ | ରଗ୍‌ବି | — ୧୫ |
| ଫୁଟବଲ | — ୧୧ | ଓ୍ୟାଟରପୋଲୋ | — ୭ |
| କ୍ରିକେଟ | — ୧୧ | ପୋଲ | — ୪ |
| ଭଲିବଲ | — ୬ | | |

ବ୍ୟାଡ଼ମିଣ୍ଟନ, ଟେନିସ, ଟେବୁଲ ଟେନିସ – ୧ କିମ୍ବା ୨

**ଜାତୀୟ ଖେଳ**

| | | |
|---|---|---|
| ଜାପାନ | — | ଜୁ – ଜୁ ସୁ |
| ସ୍କଟଲ୍ୟାଣ୍ଡ | — | ରଗ୍‌ବି ଫୁଟବଲ |
| କାନାଡ଼ା | — | ତୁଷାର ହକି |
| ଇଉ-କେ | — | କ୍ରିକେଟ |
| ଅଷ୍ଟ୍ରେଲିୟା | — | କ୍ରିକେଟ |
| ଇଉ-ଏସ-ଏ | — | ବେସ୍‌ବଲ |
| ସ୍ପେନ | — | ଷଣ୍ଢ ଲଢ଼େଇ |
| ଭାରତ | — | ହକି, କବାଡ଼ି |

**ଖେଳ, କପ୍ ଓ ଟ୍ରଫି**

ଆଗାଖାଁ କପ୍ – ହକି (ପଶ୍ଚିମ ଭାରତ)
ବେଗଟନ କପ୍—ହକି—(କଲିକତା)
କାନାଡା କପ୍ ଓ୍ୟାଲ୍ଡ କପ୍—ଗଲ୍ଫ (ବିଶ୍ୱଚମ୍ପିଆନସିପ୍)
କଲମ୍ବୋ କପ୍—(ଫୁଟବେଲ) ଭାରତ, ପାକିସ୍ତାନ, ବର୍ମା ଓ ସିଲନ,
ଡେଭିସ କପ୍—ଟେନିସ (ଇଉ-କେ)
ଧ୍ୟାନଚାନ୍ଦ ଟ୍ରଫି— ହକି (ଭାରତ)
ଡର୍ବି— ଘୋଡ଼ାଦୌଡ଼ (ଇଉ-କେ)
ଡୁରାଣ୍ଡ କପ୍— ଫୁଟବଲ (ଭାରତ)

ଜୟଲକ୍ଷ୍ମୀ କପ୍—ଜାତୀୟ ଟେବୁଲ ଟେନିସ ଚାମ୍ପିଅନସିପ୍ (ମହିଳା)
ଜେଡ଼ ରତନ ଟାଟା ଟ୍ରଫି—ହକି (ମହିଳା-ଭାରତ)
ମୌଲାନା ଆଜାଦ ଟ୍ରଫି—ଆନ୍ତଃ ବିଶ୍ୱବିଦ୍ୟାଳୟ ଖେଳ
ନେହୁରୁ ଟ୍ରଫି - ହକି(ଭାରତ)
ପ୍ରିନ୍ସ ଅଫ ୱେଲ୍ସ କପ୍—ଗଲ୍ଫ (ୟୁ,କେ)
ରାମାନୁଜମ କପ୍ - ଟେବୁଲ ଟେନିସ (ଭାରତ)
ରଙ୍ଗାସ୍ୱାମୀ କପ୍—ଜାତୀୟ ହକି ଚାମ୍ପିଆନସିପ୍—ଭାରତ
ରନଜିଟ୍ରଫି—କ୍ରିକେଟ (ଭାରତ)  ରୋଭର୍ସକପ—ଫୁଟବଲ (ଭାରତ)
ସନ୍ତୋଷଟ୍ରଫି—ଜାତୀୟ ଫୁଟବଲ ଚାମ୍ପିଅନସିପ (ଭାରତ)
ସୁବ୍ରତ କପ୍—ଆନ୍ତଃ ସ୍କୁଲ ଫୁଟବଲ (ଭାରତ)
ଥମାସ କପ୍—ବାଡ଼ମିଣ୍ଟନ—ବିଶ୍ୱଚାମ୍ପିଅନସିପ
ଉବେର କପ—ବାଡ଼ମିଣ୍ଟନ (ବିଶ୍ୱମହିଳା ଚାମ୍ପିଅନସିପ୍)
ଉଇଟମ୍ୟାନ କପ୍—ଲନଟେନିସ (ୟୁକେ ଓ ୟୁ-ଏସ-ଏର ମହିଳା)
ଉଇଲିଙ୍ଗଟନ ଟ୍ରଫି—ନୌକା ଚାଳନ (ଭାରତ)

**ସୈନ୍ୟ ବାହିନୀରେ ପଦ**

**ସ୍ଥଳସେନା**

ଫିଲ୍ଡ ମାର୍ଶାଲ, ଜେନେରଲ, ଲେଫ୍ଟନାଣ୍ଟ ଜେନେରାଲ, ମେଜର ଜେନେରାଲ, ବ୍ରିଗେଡ଼ିୟର, କର୍ଣ୍ଣେଲ, ଲେଫ୍ଟ, କର୍ଣ୍ଣେଲ, ମେଜର, କ୍ୟାପ୍ଟେନ, ଲେଫ୍ନାଣ୍ଟ, ସେକେଣ୍ଡ ଲେଫ୍ଟନାଣ୍ଟ

**ବିମାନ ବାହିନୀ**

ବିମାନ ବାହିନୀର ମାର୍ଶାଲ, ଏୟାର ଚିଫ୍ ମାର୍ଶାଲ, ଏୟାର ମାର୍ଶାଲ, ଏୟାର ଭାଇସ ମାର୍ଶାଲ, ଏୟାର କମାଡୋର, ଗ୍ରୁପ କ୍ୟାପ୍ଟେନ, ଉଇଙ୍ଗ କମାଣ୍ଡର, ସ୍କ୍ୱାର୍ଡନ ଲିଡ୍ର, ଫ୍ଲାଇଟ ଲେଫ୍ଟନାଣ୍ଟ, ଫ୍ଲାଇଙ୍ଗ ଅଫିସର, ପାୟଲଟ ଅଫିସର ।

**ନୌ ବାହିନୀ**

ନୌ ବାହିନୀର ଆଡମିରାଲ, ଆଡମିରାଲ, ଭାଇସ ଆଡମିରାଲ, କମାଡୋର, କ୍ୟାପ୍ଟେନ, କମାଣ୍ଡର, କମାଣ୍ଡର ଲେଫ୍ଟନାଣ୍ଟ, ସବ – ଲେଫ୍ଟନାଣ୍ଟ ।

**ଭାରତର ଅନୁସନ୍ଧାନ କେନ୍ଦ୍ର ଓ ସ୍ଥାନ**

ଜାତୀୟ କେମିକାଲ୍ ଲବରେଟରୀ—ପୁନା
ଜାତୀୟ ଫିଜିକାଲ ଲବରେଟରୀ—ନୂଆଦିଲ୍ଲୀ
ସେଣ୍ଟ୍ରାଲ ଫୁଏଲ ରିସର୍ଚ୍ଚ ଇନଷ୍ଟିଚ୍ୟୁଟ – ଜିଅଲମୋରା (ବିହାର)
ସେଣ୍ଟ୍ରାଲ ଫୁଡ ଟେକନୋଲଜିକାଲ ଇନଷ୍ଟିଚ୍ୟୁଟ – ମହୀଶୂର
ଜାତୀୟ ମେଟାଲର୍ଜିକାଲ ଲବରେଟରୀ—ଜାମସେଦପୁର
ସେଣ୍ଟ୍ରାଲ ଡ୍ରଗ ରିସର୍ଚ୍ଚ ଇନଷ୍ଟିଚ୍ୟୁଟ—ଲକ୍ଷ୍ନୌ

ସେଣ୍ଟ୍ରାଲ ରୋଡ଼.ରିସର୍ଚ୍ଚ ଇନଷ୍ଟିଚ୍ୟୁଟ – ଦିଲ୍ଲୀ

ସେଣ୍ଟ୍ରାଲ୍ ଇଲେକଟ୍ରନିକ୍ସ ଇଞ୍ଜିନିୟରିଙ୍ଗ ରିସର୍ଚ୍ଚ ଇନଷ୍ଟିଚ୍ୟୁଟ - ପିଲନି (ରାଜସ୍ଥାନ)

ଜାତୀୟ ବୋଟାନିକାଲ ଗାର୍ଡନ—ଲକ୍ଷ୍ନୌ

ସେଣ୍ଟ୍ରାଲ୍ ସଲ୍ଟ ଆଣ୍ଡ ମେରାଇନ କେମିକାଲ୍ ରିସର୍ଚ୍ଚ ଇନିଷ୍ଟିଚୁ୍ୟଟ—ଭବ-ନଗର

ସେଣ୍ଟ୍ରାଲ ମାଇନିଙ୍ଗ ରିସର୍ଚ୍ଚ ଷ୍ଟେସନ—ଧାନବାଦ

ବିରଳା ଇଣ୍ଡଷ୍ଟ୍ରିୟାଲ ଆଣ୍ଡ ଟେକନୋଲଜିକାଲ ମ୍ୟୁଜିୟମ – କଲିକତା

ସେଣ୍ଟ୍ରାଲ ମେକାନିକାଲ ଇଂଜିନିଅରିଂ ରିସର୍ଚ୍ଚ ଇନଷ୍ଟିଚ୍ୟୁଟ—ଦୁର୍ଗାପୁର

ନ୍ୟାଶନାଲ ଏନଭାଇରନମେଣ୍ଟ ଇଞ୍ଜିନିୟରି ଇନଷ୍ଟିଚ୍ୟୁଟ – ନାଗପୁର

ନ୍ୟାଶନାଲ ଏରୋନଟିକାଲ ଲାବରେଟରି—ବାଙ୍ଗାଲୋର

ସେଣ୍ଟ୍ରାଲ ଇଣ୍ଡିଆନ ମେଡ଼କାଲ ପ୍ଲାଣ୍ଟସ୍ ଅର୍ଗାନାଇଜେସନ – ନୂଆଦିଲ୍ଲୀ

ସେଣ୍ଟ୍ରାଲ ସାଇଣ୍ଟିଫିକ ଇନଷ୍ଟ୍ରୁମେଣ୍ଟ ଅର୍ଗାନାଇଜେସନ —ନୂଆଦିଲ୍ଲୀ

ଇଣ୍ଡିଆନ ଇନଷ୍ଟିଚ୍ୟୁଟ ଅଫ ପେଟ୍ରୋଲିୟମ—ଡେରାଡୁନ

ନ୍ୟାଶନାଲ ଜିଓଗ୍ରାଫିକାଲ ରିସର୍ଚ୍ଚ ଇନଷ୍ଟିଚ୍ୟୁଟ —ହାଇଦ୍ରାବାଦ

ଟାଟା ଇନଷ୍ଟିଚ୍ୟୁଟ ଅଫ ଫଣ୍ଡାମେଣ୍ଟାଲ ରିସର୍ଚ୍ଚ – ବମ୍ବେ

ସାହାଇ ଇନଷ୍ଟିଚୁଟ ଅଫ ନ୍ୟୁକ୍ଲିୟର ଫିଜିକ୍ସ—କଲିକତା ।

ଫିଜିକାଲ ରିସର୍ଚ୍ଚ ଲାବରେଟରୀ – ଆହମେଦାବାଦ ।

ବିରବଲ ସାହାଣୀ ଇନଷ୍ଟିଚ୍ୟୁଟ ଅଫ ପାଲକୋ ବୋଟାନି—ଲକ୍ଷ୍ନୌ ।

ଇଣ୍ଡିଆନ ଇନଷ୍ଟିଚ୍ୟୁଟ ଅଫ ସାଇନ୍ସ—ବାଙ୍ଗାଲୋର ।

**ଭାରତର ସ ର କାରଖାନା**

ସିନ୍ଦ୍ରି (ବିହାର) ନଙ୍ଗଲ (ପଞ୍ଜାବ), ନେୟାଭେଲି (ତାମିଲନାଡ଼ୁ), ରାଉରକେଲା (ଓଡ଼ଶା), ଟ୍ରମ୍ବେ (ମହାରାଷ୍ଟ୍ର), ଦୁର୍ଗାପୁର (ପଶ୍ଚିମ ବଙ୍ଗ), କୋର୍ବା (ମଧ୍ୟପ୍ରଦେଶ), ଗୋରଖପୁର (ଉତ୍ତର ପ୍ରଦେଶ), ନାମରୁପ (ଆସାମ), ପାଙ୍କ (ଉତ୍ତର ପ୍ରଦେଶ), କୋଚିନ (କେରଳ), କାଣ୍ଡଲା (ଗୁଜରାଟ), ବିଶାଖାପାଟ୍ଟମ (କରମଣ୍ଡଳ ସାର କାରଖାନା) ।

| **ବ୍ୟବସାୟିକ ନାମ** | — | **ଦ୍ରବ୍ୟ** |
|---|---|---|
| ଆଗଫା | — | ଫଟୋ ଜିନିଷ |
| ଆଲଉଇନ | — | ରେଫ୍ରିଜରେଟର, ଷ୍ଟିଲ ଫର୍ନିଚର |
| ଚେଭରଲେଟ | — | କାର୍ |
| ଆମ୍ବାସାଡର | — | କାର୍ |

| | | |
|---|---|---|
| ଅମୁଲ | — | ଛେନା ଓ ଲହୁଣୀ |
| ବିନି | — | ତୁଳା ଲୁଗା |
| ବି. ଏସ ଏ | — | ମୋଟର ସାଇକେଲ, ରାଇଫଲ, ବାଇସାଇକେଲ |

ବ୍ରାସୋ—ବ୍ରାସ ପଲିସ, ଫ୍ଲିଟ—ପୋକମରା ଔଷଧ
ଫେବରଲ୍ୟୁବା—ଘଣ୍ଟା ଫୋର୍ଡ—ମୋଟର କାର, ଟ୍ରକ, ଟ୍ରାକ୍ଟର
କଲ୍ଟ—ରିଭଲଭର, ଫିଆଟ—କାର୍
ଗ୍ଲାକ୍ସୋ—ଶିଶୁଖାଦ୍ୟ, ବିସ୍କୁଟ, ଗ୍ଲୁକୋଜ
ଗୋଦରେଜ—ସାବୁନ; ସେଫ୍ସ, ଷ୍ଟୋରୱାଲ୍ସ, ରେଫ୍ରିଜିରେଟର ।
ଗୁଡ୍ ଇୟର—ଟାୟାର, ଏଚ-ଏମ-ଭି—ଗ୍ରାମୋଫୋନ, ରେଡ଼ିଓ
ଇଣ୍ଡେନ କୁକିଙ୍ଗ ଗ୍ୟାସ, କୋଡ଼ାକ—ଫଟୋନେବା ଜିନିସ
ରେମିଙ୍ଗଟନ—ଟାଇପ ରାଇଟର, ସେଫାରସ—ଫାଉଣ୍ଟେନପେନ
ଟାଟା—ଇସ୍ପାତ ଓ ସାବୁନ, ଉଷା—ସିଲାଇ ମେସିନ ଇଲେକ୍ଟ୍ରିକ ଫ୍ୟାନ
ମଫରମ—ବିସ୍କୁଟ, ଟଫି, ମାଟାଡୋର—ଟେବିଲିନ, ପିକ୍ଅପ୍
ମର୍ଫି—ରେଡ଼ିଓ, ଜିଲ—ଥର୍ମୋମିଟାର

**ଭୌଗୋଳିକ ଉପନାମ**

ବେଙ୍ଗଲର ଦୁଃଖ—ଦାମୋଦର ନଦୀ, ଚୀନର ଦୁଃଖ—ହୁଆଙ୍ଗହୋ
ସାତ ପାହାଡର ସହର—ରୋମ, ସ୍କାଇସ୍କ୍ରାପରର ସହର—ନ୍ୟୁୟର୍କ
ଅନ୍ଧକାର ମହାଦେଶ—ଆଫ୍ରିକା, ନୈସର୍ଗିକ ସହର—ରୋମ
ନୀଳ ନଦୀର ଦାନ—ଇଜିପ୍ଟ ଭାରତର ତୋରଣ ଦ୍ୱାର—ବମ୍ବେ
ଅଶ୍ରୁର ତୋରଣଦ୍ୱାର—ଜେରୁସାଲମ ପାଲେଷ୍ଟାଇନ, ପବିତ୍ର ସ୍ଥାନ ଜେରୁସାଲମ
ଭୂମଧ୍ୟ ସାଗରର ଚାବି—ଜିବ୍ରାଲଟର, ମଧ୍ୟରାତ୍ରି ସୂର୍ଯ୍ୟର ଦେଶ—ନରୱେ
ସହସ୍ର ହ୍ରଦର ଦେଶ—ଫିନଲ୍ୟାଣ୍ଡ, ଉଦୟ ସୂର୍ଯ୍ୟର ଦେଶ—ଜାପାନ
ଶ୍ୱେତହସ୍ତୀର ଦେଶ—ଥାଇଲ୍ୟାଣ୍ଡ, ବଜ୍ର ବିଦ୍ୟୁତର ଦେଶ—ଭୁଟାନ
ପଞ୍ଚ ନଦୀର ଦେଶ—ପଞ୍ଜାବ, ମାଞ୍ଚେଷ୍ଟର ଅଫ ଦି ଓରିଏଣ୍ଟ—ଓସାକା (ଜାପାନ)
ୟୁରୋପର ଖେଳପଡ଼ିଆ—ସୁଇଜରଲ୍ୟାଣ୍ଡ, ରୋଜ-ପିଙ୍କ ସିଟି—ଜୟପୁର
ଉତ୍ତରର ଭେନିସ—ଷ୍ଟକହଲମ

**ଜାତିସଙ୍ଘ**

ବିଶ୍ୱ ଶାନ୍ତି ଓ ନିରାପତ୍ତା ରକ୍ଷା ନିମନ୍ତେ ୧୫୩ଟି ଦେଶ ବା ଜାତିକୁ ନେଇ

ଜାତିସଙ୍ଘ ଗଠିତ । ଏମାନେ ରାଜନୀତି, ଆର୍ଥିକ ଓ ସାମାଜିକ କ୍ଷେତ୍ରରେ ପରସ୍ପରକୁ ସାହାଯ୍ୟ କରିବା ନିମନ୍ତେ ଚୁକ୍ତିବଦ୍ଧ । ୫୦ ଦେଶର ପ୍ରତିନିଧିଙ୍କରେ ୧୯୪୫ ମସିହା ଜୁନ ୨୬ ତାରିଖରେ ସାନଫ୍ରାନ୍‌ସିସକୋରେ ଜାତିସଙ୍ଘର ସର୍ତ୍ତର ସ୍ୱାକ୍ଷରିତ ହେଲା । ରାଷ୍ଟ୍ରପତି ରୁଜଭେଲ୍‌ଟଙ୍କ ନିର୍ଦ୍ଦେଶରେ ଜାତିସଙ୍ଘ ନାମ ଦିଆଗଲା । ୧୯୪୫ ମସିହା ଅକ୍ଟୋବର ୨୪ ତାରିଖ ଠାରୁ ଜାତିସଙ୍ଘ ସକ୍ରିୟ ହେଲା ।

**ଭିଟାମିନ**

ଭିଟାମିନ-ଏ – କେତେକ ଖାଦ୍ୟରେ ଭିଟାମିନ-ଏ ଅଛି । ଏହା ରୋଗ ସଂକ୍ରମଣର ପ୍ରତିରୋଧ କରେ ଓ ସମସ୍ତ ଶରୀରକୁ ସୁସ୍ଥ ରଖେ । ଭିଟାମିନ-ଏ, କ୍ଷୁଧା ବୃଦ୍ଧି କରେ, ଅଙ୍ଗ ପ୍ରତ୍ୟଙ୍ଗ ବୃଦ୍ଧି କରେ ଓ ଦୀର୍ଘ ଜୀବନ ଦାନ କରେ । ଭିଟାମିନ ଏ ଅଭାବରୁ ଅନ୍ଧାରକଣା ରୋଗ, ଚର୍ମ ରୋଗ, ପାକସ୍ଥଳୀ ଓ ଶ୍ୱାସଯନ୍ତ୍ର ରୋଗ ହୁଏ । ଦୁଧ, ଲହୁଣୀ; ଅଣ୍ଡା (ହଳଦୀ ଅଂଶ ବା କେସର) କ୍ୟାରଟ୍, ଟମାଟୋ, ଟଟକା ଫଳ, କଡ଼ ଲିଭର ଅଏଲରେ ପ୍ରଚୁର ଭିଟାମିନ—ଏ ଅଛି ।

**ଭିଟାମିନ- ବି**

ଏହା ସିରିଲ, ପିଜ ଓ ବିନ୍‌ରେ ଅଛି । ଏହା ସ୍ନାୟୁରୋଗରୁ ଯଥା—ବେରି-ବେରି, ପେଲେଗ୍ରା ରୋଗରୁ ରକ୍ଷା କରିବା ସଙ୍ଗେ ସଙ୍ଗେ ରକ୍ତହୀନତା ଦୂର କରେ ।

**ଭିଟାମିନ-ସି**

ଦାନ୍ତ ଓ ଅସ୍ଥିକୁ ସୁସ୍ଥ ରଖିବା ସଙ୍ଗେ ସଙ୍ଗେ ସ୍କର୍ଭିରୁ ଶରୀରକୁ ରକ୍ଷା କରେ । ଟଟକା ପରିବା, କମଳା, ନେମ୍ବୁ, ଲେଟୁସ, ଟମାଟୋ, କୋବି ଓ ଟର୍ନିପରେ ଭିଟାମିନ-ସି ଅଛି ।

**ଭିଟାମିନ-ଡି**

ଦୁଧ, ଲହୁଣୀ, ଘିଅ, କଡ଼ ଲିଭର ଅଏଲ । ଅଣ୍ଡାର କେସର ପ୍ରଭୃତିରେ ଭିଟାମିନ ଡ଼-ଅଛି । ସୂର୍ଯ୍ୟ କିରଣ ଦ୍ୱାରା ଭିଟାମିନ-ଡ଼ ଶରୀର ଭିତରେ ପ୍ରସ୍ତୁତ ହୁଏ । ଏହା ଅସ୍ଥି ଗଠନରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ରିକେଟି ରୋଗରୁ ରକ୍ଷା କରେ ।

**ଭିଟାମିନ-ଇ**

ଗଜା ଗହମରେ ଯଥେଷ୍ଟ ପରିମାଣରେ ଭିଟାମିନ-ଇ ଅଛି । ଏହା ଶରୀରକୁ ସୁସ୍ଥ ରଖେ ।

**ଭିଟାମିନ-କେ**

ମାଛ, ଗହମ, ମକ୍‌କା ପ୍ରଭୃତିରେ ଅଛି । ଏହା ରକ୍ତକୁ ସୁସ୍ଥ ରଖେ ।